# ଉତ୍କଳ ପ୍ରସଙ୍ଗ

୪୮ ଭାଗ ୫ମ ସଂଖ୍ୟା
ମାର୍ଗଶିର ୧୯୧୩ ଶକାବ୍ଦ
ଡିସେମ୍ବର ୧୯୯୧



*ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣୀ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଗୁଡ଼ିକ ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।*

*"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସମୟରେ ଓଡ଼ିଶା ସରକାରଙ୍କର ବୋଲି ଭାବିବାକୁ ହେବ ନାହିଁ ।*

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର, ଭୁବନେଶ୍ୱର
ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ
ଫଟୋଟାଇପ୍ ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ

## ସୂଚୀ

*ସମ୍ପାଦକୀୟ......*

## ମହିଳାଙ୍କ ପାଇଁ ସ୍ଥାନ ସଂରକ୍ଷଣ

"Let not women ever despise their sex or deplore that they were not born men. There is as much reason for man to wish that he was born a woman."

— *Mahatma Gandhi*

ଅର୍ଥାତ୍ —

"ସ୍ତ୍ରୀମାନେ ତାଙ୍କ ଲିଙ୍ଗର ଘୃଣା ନକରନ୍ତୁ ଏବଂ 'ପୁରୁଷ ଜନ୍ମ କାହିଁକି ନହେଲା' ବୋଲି ଅନୁଶୋଚନା ନକରନ୍ତୁ । ପୁରୁଷ ମଧ୍ୟ 'ମୋର ସ୍ତ୍ରୀ ଜନ୍ମ ହୋଇଥାନ୍ତା କି' ବୋଲି କଳ୍ପନା କରିବାର ଯଥେଷ୍ଟ କାରଣ ଅଛି ।"

— *ମହାତ୍ମା ଗାନ୍ଧୀ*

ନାରୀ ଓ ପୁରୁଷ ଉଭୟେ ଏକା ଉପାଦାନରେ ଗଢ଼ା । ସ୍ତ୍ରୀ ପୁରୁଷର କେବଳ ଅର୍ଦ୍ଧାଙ୍ଗିନୀ ନୁହେଁ, ସେ ତାହାର ସହଧର୍ମିଣୀ ଓ ସହକର୍ମିଣୀ । ନାରୀ ସୃଷ୍ଟିକାରିଣୀ–ଜନନୀ । ସୁତରାଂ ନାରୀ ଜାତିର ସ୍ଥାନ ବହୁ ଉଚ୍ଚରେ । ସେମାନେ ପୁରୁଷର ଦାସ ବା ଅନୁଚର ନୁହଁନ୍ତି ବା ପୀଡ଼ନକ ନୁହଁନ୍ତି । ସେଥିପାଇଁ ଜାତିର ଜନକ ବାପୁଜୀ ମଧ୍ୟ କହିଥିଲେ ଯେ, "ମୁଁ ସ୍ତ୍ରୀ ହୋଇ ଜନ୍ମ ହୋଇଥିଲେ ସ୍ତ୍ରୀକୁ ତା'ର ପୀଡ଼ନକ ବୋଲି ପୁରୁଷର ଯେଉଁ ଭଣ୍ଡାମି, ତାହା ବିରୁଦ୍ଧରେ ବିଦ୍ରୋହ କରିଥାନ୍ତି" । ଗାନ୍ଧିଜୀଙ୍କର ସ୍ୱପ୍ନର ଭାରତବର୍ଷରେ ପୁରୁଷ ଓ ନାରୀ ଉଭୟଙ୍କର ଅଧିକାର ସମାନ ହେବାର କଳ୍ପନା ସେ କରିଥିଲେ ।

ପରିତାପର ବିଷୟ, ସ୍ୱାଧୀନତାର ଦୀର୍ଘ ୪୪ ବର୍ଷ ପରେ ମଧ୍ୟ ନାରୀ ସମାଜକୁ, ଆମର ସମାଜ, ରାଜନୀତି ଓ ପ୍ରଶାସନରେ ଆମେ ଉପଯୁକ୍ତ ସ୍ଥାନ ଦେଇପାରିନାହୁଁ । ଆମର ସମ୍ବିଧାନରେ ଲିଙ୍ଗ ନିର୍ବିଶେଷରେ ସମସ୍ତଙ୍କୁ ସମାନ ମୌଳିକ ଅଧିକାର ଦେବା ବ୍ୟବସ୍ଥା ବର୍ତ୍ତମାନ ସୁଦ୍ଧା ପୂର୍ଣ୍ଣ ଫଳପ୍ରଦ ହୋଇପାରିନାହିଁ । ବିଭିନ୍ନ ରାଜ୍ୟରେ ନାରୀମାନଙ୍କୁ ବିଭିନ୍ନ କ୍ଷେତ୍ରରେ ଉପଯୁକ୍ତ ସ୍ଥାନ ଦେବା ବିଷୟ ଆଲୋଚିତ ହୋଇ ଏହାର ଆବଶ୍ୟକତା ଅନୁଭୂତ ହୋଇଥିଲେ ମଧ୍ୟ ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ସକ୍ରିୟ ପଦକ୍ଷେପ ନିଆଯାଇ ପାରିନାହିଁ । ଏହି ପରିପ୍ରେକ୍ଷୀରେ ପୌର ସଂସ୍ଥା, ପଞ୍ଚାୟତ ଓ ପଞ୍ଚାୟତ ସମିତି ନିର୍ବାଚନରେ ମହିଳାମାନଙ୍କ ନିମନ୍ତେ ଶତକଡ଼ା ତିରିଶ ଭାଗ ସ୍ଥାନ ସଂରକ୍ଷିତ କରିବା ପାଇଁ ରାଜ୍ୟ ସରକାରଙ୍କ ନିଷ୍ପତ୍ତି କେବଳ ସ୍ୱାଗତଯୋଗ୍ୟ ନୁହେଁ, ପରନ୍ତୁ ଏକ ଐତିହାସିକ ଓ ଯୁଗାନ୍ତକାରୀ ପଦକ୍ଷେପ । ସୁଖର ବିଷୟ, ଆଗାମୀ ନିର୍ବାଚନରୁ ଏହା କାର୍ଯ୍ୟକାରୀ ହେବ । ଏ ଦିଗରେ ସମଗ୍ର ଦେଶରେ ଆମ ରାଜ୍ୟ ଅଗ୍ରଗାମୀ ହୋଇ ପାରିଥିବା ଆନନ୍ଦର ବିଷୟ ।

ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ନାରୀ ସମାଜର ବିକାଶ ପାଇଁ ବିଭିନ୍ନ ପଦକ୍ଷେପ ନେବା ପାଇଁ ପ୍ରକାଶ କରିଥିଲେ । ଆମର ଜନ ସଂଖ୍ୟାର ପ୍ରାୟ ଅଧା ନାରୀ ହୋଇଥିବା ବେଳେ ସେମାନଙ୍କର ସମନ୍ୱିତ ବିକାଶ ବିନା ସମାଜର ପୂର୍ଣ୍ଣାଙ୍ଗ ବିକାଶ ସମ୍ଭବପର ନୁହେଁ । ତେଣୁ ବିଭିନ୍ନ ଉନ୍ନୟନ କାର୍ଯ୍ୟକ୍ରମ ସମ୍ପର୍କରେ ନିଷ୍ପତ୍ତି ନେବା ପାଇଁ କ୍ଷମତାର ବିକେନ୍ଦ୍ରୀକରଣ କରି ପୌର ସଂସ୍ଥା, ଗ୍ରାମ ପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକୁ ଅଧିକ କ୍ଷମତା ପ୍ରଦାନ କଲାବେଳେ ଏହି ସଂସ୍ଥାଗୁଡ଼ିକରେ ମହିଳାମାନଙ୍କର ଉପଯୁକ୍ତ ପ୍ରତିନିଧିତ୍ୱ ଦେବା ନିଶ୍ଚିତ ଭାବେ ଏକ ବୈପ୍ଳବିକ ପଦକ୍ଷେପ । ନିଜର ପ୍ରତିଶ୍ରୁତି ପରିପାଳନ କ୍ଷେତ୍ରରେ ବର୍ତ୍ତମାନର ରାଜ୍ୟ ସରକାରଙ୍କର ନିଷ୍ଠା ଓ ଆନ୍ତରିକତାର ମଧ୍ୟ ଏହା ପରିଚାୟକ ।

ଆନନ୍ଦର କଥା, ଦଳମତ ନିର୍ବିଶେଷରେ ସମସ୍ତେ ଏହି ଯୁଗାନ୍ତକାରୀ ପଦକ୍ଷେପକୁ ସ୍ୱାଗତ କରିଛନ୍ତି । ମହିଳାମାନଙ୍କର ଉପଯୁକ୍ତ ପ୍ରତିନିଧିତ୍ୱ ଫଳରେ ଆମର ସମାଜରେ ଏକ ନୂତନ ଯୁଗର ଅଭ୍ୟୁଦୟ ହୋଇପାରିବ ସେଥିରେ ସନ୍ଦେହ ନାହିଁ ।

# "ଶିଶୁ ବ୍ୟକ୍ତିତ୍ୱର ବିକାଶ ଦିଗରେ ଓଡ଼ିଆ ଶିଶୁ ସାହିତ୍ୟ ପତ୍ରିକା : ଏକ ବିଶ୍ଳେଷଣ

ଅଧ୍ୟାପକ ଅଶୋକ କୁମାର ହୋତା

''Personality is to man what perfume is to a flower.''
—*Charles M. Schwab*

ବ୍ୟକ୍ତିତ୍ୱ ମଣିଷର ଜୀବନ ପୁଷ୍ପର ସୌରଭ ସଦୃଶ୍ୟ । ବ୍ୟକ୍ତିର ପରିପ୍ରକାଶ ଶିଶୁ ଅବସ୍ଥାରୁ ହିଁ ସାଧିତ ହୋଇଥାଏ । ମଣିଷର ବ୍ୟକ୍ତିତ୍ୱ ଦୁଇଟି ମୁଖ୍ୟ ବିଭାଗକୁ ନେଇ ପରିପୁଷ୍ଟ ହୁଏ । ପ୍ରଥମଟି ହେଲା, ବଂଶାନୁକ୍ରମ (Heredity) –ମଣିଷର ଶାରୀରିକ ଗଠନ, କଣ୍ଠ ସ୍ୱର, ଉଚ୍ଚତା, ବୁଦ୍ଧିର ସ୍ତର ଇତ୍ୟାଦି । ଦ୍ୱିତୀୟଟି ହେଲା, ପରିପାର୍ଶ୍ୱ (Environment)– ଯାହାକି ମଣିଷ ମନରେ ବିଶେଷ ପ୍ରଭାବ ପକାଇ ଥାଏ । ମଣିଷର ଚିନ୍ତାଧାରା, ଜୀବନ ଦର୍ଶନ, ମନୋଭାବ ଓ ମୂଲ୍ୟବୋଧ ତା'ର ପରିବେଶ ଦ୍ୱାରା ବେଶ୍ ପ୍ରଭାବିତ ଓ ନିୟନ୍ତ୍ରିତ । ପରିବେଶ ଶିଶୁର ବ୍ୟକ୍ତିତ୍ୱ ଗଠନ ଦିଗରେ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ପରିବାର, ସମାଜ, ବିଦ୍ୟାଳୟ ମଧ୍ୟରେ ସଂହତି ଥିଲେ ଶିଶୁ ବ୍ୟକ୍ତିତ୍ୱ ତହିଁରୁ ପ୍ରେରଣା ଓ ଉତ୍ସାହ ପାଏ । ଏହି ପରିପ୍ରେକ୍ଷୀରେ ଶିଶୁ–ସାହିତ୍ୟ ପତ୍ରିକା ପରିପାର୍ଶ୍ୱର ଏକ ବିଶିଷ୍ଟ ଅଙ୍ଗ ରୂପେ ଗୁରୁତ୍ୱପୂର୍ଣ୍ଣ । ଏହି ଶିଶୁ–ସାହିତ୍ୟ ମାଧ୍ୟମରେ ଆମେ ପିଲାକୁ ଶିକ୍ଷା, ତା'ର ଭାବନାକୁ ରୂପ ଦେଇ ତଥା ଅନ୍ତର୍ନିହିତ ପ୍ରତିଭାର ସମ୍ପୂର୍ଣ୍ଣ ବିକାଶ କରିବା ପାଇଁ ଉପଯୁକ୍ତ ମାନସିକ ଉପାଦାନ ଯୋଗାଇଥାଉ । ଏହି ପତ୍ରପତ୍ରିକା ଶିଶୁ ବ୍ୟକ୍ତିତ୍ୱର ସର୍ବାଙ୍ଗୀନ ଉନ୍ନତି ତଥା ବିକାଶରେ କେତେଦୂର ସକ୍ଷମ ତା'ର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ହିଁ ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

## ଶିଶୁ–ସାହିତ୍ୟ ପତ୍ରିକାର ପରିବାର : ଅତୀତ ଓ ବର୍ତ୍ତମାନ

ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଓଡ଼ିଶାରେ କୌଣସି ଶିଶୁ–ପତ୍ରିକା ପ୍ରକାଶ ପାଉ ନଥିଲା । ସେହି ସମୟରେ ଶିଶୁ–ପତ୍ରିକା ପ୍ରକାଶ କରିବା ପାଇଁ କଟକରେ ସେବା ରାୟ ଅପ୍ରାଣ ଚେଷ୍ଟା କରି ୧୯୦୯ ରେ 'ପ୍ରଭାତ' ନାମକ ଏକ ଶିଶୁ–ସାହିତ୍ୟ ପତ୍ରିକା ସମ୍ପାଦନ କରିଥିଲେ । ସେ ସମୟରେ ଏହା ଥିଲା ଓଡ଼ିଆ ଶିଶୁ–ସାହିତ୍ୟ ସୃଷ୍ଟିର ବିମଳ ସୁପ୍ରଭାତ । ତା' ପରେ ପରେ ୧୯୧୮ ମସିହାରେ ଅଗଣି ଦାସ ଓ ଚିନ୍ତାମଣି ଆଚାର୍ଯ୍ୟଙ୍କ ସମ୍ପାଦନାରେ "ମଧୁକୋଷ" ଓ "ପଞ୍ଚାମୃତ" ଓଡ଼ିଆ ଶିଶୁ–ସାହିତ୍ୟକୁ ପ୍ରାଣବନ୍ତ କରିବାରେ ସାହାଯ୍ୟ କରିଥିଲେ । ୧୯୩୨ ମସିହାରେ ବାଳକୃଷ୍ଣ କରଙ୍କ ପ୍ରକାଶିତ ମାସିକ ପତ୍ରିକା "ଜହ୍ନମାମୁଁ" ଶିଶୁ–ସାହିତ୍ୟ କ୍ଷେତ୍ରରେ ଏକ ବିଶିଷ୍ଟ ଅବଦାନ । ସ୍ୱାଧୀନତା ପରେ ପରେ ୧୯୪୮ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ 'ମୀନା ବଜାର', ୧୯୪୯ ମସିହାରେ ବାଳକୃଷ୍ଣ କରଙ୍କ "ଶିଶୁ–ସଞ୍ଜାଳୀ" ଯାହାକି ପ୍ରତି ମାସର ପୂର୍ଣ୍ଣିମୀ ତିଥିରେ ପ୍ରକାଶ ପାଉଥିଲା । ୧୯୫୨ ମସିହାରେ 'ସଂସାର' 'ଶିଶୁ–କିଶୋର', ୧୯୫୪ ମସିହାରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଯୁକ୍ତ ବିନୋଦ କାନୁନ୍‌ଗୋଙ୍କ ସମ୍ପାଦିତ 'ଶିଶୁ–ସମ୍ବାଦ' ୧୯୫୫ ମସିହାରେ "ପିଲାଙ୍କ ସାଥୀ" ୧୯୫୭ ମସିହାରେ ବରେଣ୍ୟ କବି ଗୋଦାବରୀଶ ମହାପାତ୍ରଙ୍କ ସମ୍ପାଦିତ "ଚୁଆଁଚୁଇଁ", "ଠେକୁଆ ଭାଇ" "କୁନିହାତୀ" । ୧୯୬୩ କବି ବୀରକିଶୋର ଦାସଙ୍କ ପ୍ରଣିତ "ମୋ ଦେଶ" ଓ ତତ୍‌କାଳୀନ ଅନ୍ୟ ଦୁଇଟି ପତ୍ରିକା ହେଲା "କିଶୋର" ଓ "ବାସମାମୁଁ" । ସ୍ୱାଧୀନତା ପରଠାରୁ ୧୯୭୦ ମସିହା ପର୍ଯ୍ୟନ୍ତ କ୍ରମେ କ୍ରମେ ପ୍ରତି ଦୁଇବର୍ଷର ବ୍ୟବଧାନରେ ଗୋଟିଏ ଲେଖାଏଁ ଶିଶୁ ପତ୍ରିକା ପ୍ରକାଶିତ ହୋଇ କ୍ରମଶଃ ଏହାର ସଂଖ୍ୟା ବୃଦ୍ଧି ହେବାର ଲକ୍ଷ୍ୟ କରାଯାଏ । ତୁଳନାତ୍ମକ ଭାବେ ୧୯୭୨ରୁ ୧୯୮୧– ଏହି ଦଶ ବର୍ଷ ଭିତରେ ଓଡ଼ିଆ ଶିଶୁ–ସାହିତ୍ୟ ପତ୍ରିକାଗୁଡ଼ିକର ପରିମାଣ ଯେଉଁଭଳିଭାବରେ ବୃଦ୍ଧି ପାଇଛି, ତାହା ୧୯୦୦ ମସିହାରୁ ୧୯୭୦ ମସିହା ପର୍ଯ୍ୟନ୍ତ ଦୀର୍ଘ ୭୦ ବର୍ଷ ମଧ୍ୟରେ ବି ସମ୍ଭବ ହୋଇପାରିନଥିଲା । ଏହି ଦଶ ବର୍ଷ ମଧ୍ୟରେ (୧୯୭୨–୧୯୮୦) ମସିହା ପ୍ରକାଶ ପାଉଥିବା ପତ୍ରିକାଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

TABLE I

୧୯୭୧-୮୧ ମସିହା ମଧ୍ୟରେ ପ୍ରକାଶ ପାଇଥିବା ଶିଶୁ ସାହିତ୍ୟ ପତ୍ରିକାର ତାଲିକା ।

| ବର୍ଷ | ପତ୍ରିକାର ନାମ | ଏହି ଦଶକ (୧୯୭୧-୮୧)ର ଅନ୍ୟାନ୍ୟ ପତ୍ରିକା ହେଲା : |
|---|---|---|
| ୧୯୭୧ | ଶିଶୁ ଲେଖା, ବିଶ୍ୱ ଶିଶୁ | ଟିକି ଚଢ଼େଇ, ବେଲୁନ୍‌ବାଲା |
| ୧୯୭୨ | ଚୁଡ଼ୁକୁ ମୁଷି, ଆ ଜହ୍ନମାମୁଁ, ବୁଲବୁଲ | ନବୋଦିତ, ଶିଶୁ ସ୍ୱର, ସୁନା ପିଲା, ଶିଶୁ ସ୍ୱପ୍ନ |
| ୧୯୭୩ | ବାରମଜା, ପାରିଜାତ, ଅପରାଜିତା, ବାଳଚଢ଼େଇ । | ଚଟ ଘୋଡ଼ା, ଆମର ଭାବନା |
| ୧୯୭୪ | ଆମ୍ଭେ କୁନା କୁନି | ଶିଶୁ ଫଉଜ, କଳିକା, କୁନିତାରା, ମୋତି ମାଣିକ |
| ୧୯୭୭ | ବଗୁଲିଆ, କୁନି ରାଇଜ, ଶିଶୁ ନନ୍ଦନ, ଶିଶୁ ଜ୍ୟୋତି, ବିଲୁଆ ନନା | ଝୁଲିମିଲି, କିଶୋର, ଫଉଜ, ସରଗ ସ୍ୱର |
| ୧୯୭୮ | ଶିଶୁ ମେଳା, ଫୁଲ କଢ଼ି, ସୁଜାତା | ଆଡ୍‌ଭେଞ୍ଚର୍, ଶିଶୁ ସଂସାର, ଟକା ଟର୍ଗିଣୀ, କାଠ ଘୋଡ଼ା |
| ୧୯୭୯ | ଜହ୍ନ ରାଇଜ, ଆମେ ନିଂ, ବିରେନ୍ଦ୍ର ନାନୀ | ବାଳି ରାଇଜ, ଶିଶୁ ପ୍ରଭା |
| ୧୯୮୦ | ଟିକି ସିପାହୀ | |

ଓଡ଼ିଶାରେ ଅଭିଭାବକଙ୍କ ଅସଚେତନତା, ପାଠକ ଅଭାବ, ଅନଭ୍ୟାସରୁ ହେଉ ବା ଆର୍ଥିକ ଅନଟନରୁ ହେଉ ବା ଅନ୍ୟ କୌଣସି କାରଣରୁ ହେଉ ଅନେକ ଶିଶୁ ସାହିତ୍ୟ ପତ୍ରିକା ଅସମୟରେ ମଉଳି ଯାଇ ଆଜି ପର୍ଯ୍ୟନ୍ତ ତାହା ତିଷ୍ଠିପାରି ନାହାନ୍ତି । ଆଜିକାର ଶିଶୁ-ସାହିତ୍ୟ ଜଗତରେ ବହୁସଂଖ୍ୟକ ଶିଶୁ-ସାହିତ୍ୟ ପତ୍ରିକାଗୁଡ଼ିକ ଲକ୍ଷ୍ୟକଲେ ମନରେ ସ୍ୱତଃ ଏକ ପ୍ରଶ୍ନବାଚୀ ଛିଡ଼ା ହୁଏ । ଓଡ଼ିଆ ଶିଶୁ-ସାହିତ୍ୟର ଆଶାନୁରୂପ ଉନ୍ନତି ଘଟିଛି କି ? ଏହି ପ୍ରଶ୍ନବାଚୀର ଉତ୍ତରରେ ଜଣେ ଗବେଷକ କହନ୍ତି:

"ବିଦେଶୀ ଶିଶୁ-ସାହିତ୍ୟ ତ ଦୂରର କଥା, ଆମ ଦେଶର ପୁଣି ପଡ଼ୋଶୀ ରାଜ୍ୟମାନଙ୍କ ତୁଳନାରେ ଆମର ଶିଶୁ-ସାହିତ୍ୟ ଅନୁନ୍ନତ............

ପୁଣି ସେ କହନ୍ତି:

"ସଂଖ୍ୟାତ୍ମକ ଓ ଗୁଣାତ୍ମକ ଦୃଷ୍ଟିରୁ ଦେଖିଲେ ଏହାର ଅବସ୍ଥା ସନ୍ତୋଷଜନକ ନୁହେଁ । ।୭।।

ତେଣୁ ଗୁଣାତ୍ମକ ଦୃଷ୍ଟିରୁ ଶିଶୁ-ସାହିତ୍ୟ ପତ୍ରିକା ଶିଶୁ ବ୍ୟକ୍ତିତ୍ୱର ବିକାଶ ପରିପ୍ରେକ୍ଷୀରେ କେତେଦୂର ସକ୍ଷମ ହୋଇଛି ତା'ର ଏକ ମନସ୍ତାତ୍ତ୍ୱିକ ବିଚାର କରିବା ଯୁକ୍ତି ଯୁକ୍ତ ବୋଲି ମନେହୁଏ ।

୧୯୩୭ ମସିହାରୁ ୧୯୮୩ ମସିହା ପର୍ଯ୍ୟନ୍ତ ଦୀର୍ଘ ୫୦ ବର୍ଷ ଧରି ଓଡ଼ିଶାର ବିଭିନ୍ନ ସ୍ଥାନରେ ଭିନ୍ନଭିନ୍ନ ସମୟରେ ପ୍ରକାଶ ହୋଇଥିବା ନଅ ଗୋଟି ଶିଶୁ ପତ୍ରିକାର ଅନୁଶୀଳନ ଶିଶୁ ବ୍ୟକ୍ତିତ୍ୱର ବିକାଶ ଦିଗରୁ ଓ ବିଷୟାନୁକ୍ରମ ଦିଗରୁ ଏହି ପ୍ରବନ୍ଧରେ ଚର୍ଚ୍ଚା କରାଯାଇଛି । ସେହି ସବୁପତ୍ରିକାଗୁଡ଼ିକ ହେଲା- ବାଳକୃଷ୍ଣ କରଙ୍କ ପ୍ରତିଷ୍ଠିତ ସଚିତ୍ର "ଜହ୍ନମାମୁଁ" (୧୯୩୭), ଡ. ମହତାବଙ୍କ ପ୍ରତିଷ୍ଠିତ "ମୀନା ବଜାର" (୧୯୬୮), ନବକିଶୋର ମହାପାତ୍ରଙ୍କ "ମନ ପବନ" (୧୯୬୩), ରାମପ୍ରସାଦ ମହାନ୍ତିଙ୍କ ସମ୍ପାଦିତ ସରକାରୀ ମୁଦ୍ରିତ ସଚିତ୍ର ଶିଶୁ ପତ୍ରିକା "ଶିଶୁଲେଖା" (୧୯୭୧), ବୀରେନ୍ଦ୍ର କୁମାର ସାମନ୍ତରାୟଙ୍କ "ଚୁଡ଼ୁକୁ ମୁଷି" (୧୯୭୨), ସୌଭାଗ୍ୟ ଲକ୍ଷ୍ମୀଙ୍କ ସମ୍ପାଦିତ "ବାରମଜା" (୧୯୭୩), ଭୁବନେଶ୍ୱର ଛାତ୍ରୋଙ୍କ "ବିଲୁଆନନା (୧୯୭୭), ବଙ୍କିମଚନ୍ଦ୍ର ନାୟକଙ୍କ ସମ୍ପାଦିତ "ଟିକିଫୁଲ" (୧୯୮୨), ପ୍ରଶାନ୍ତ କୁମାର ମହାନ୍ତିଙ୍କ ସମ୍ପାଦିତ "ଟିକି ଦୁନିଆଁ" (୧୯୮୩) ।

ଉପରୋକ୍ତ ଶିଶୁ-ପତ୍ରିକା ଗୁଡ଼ିକର ସୃଷ୍ଟି ସମ୍ଭାରକୁ ଉପଜୀବ୍ୟ କରି ଶିଶୁ ବ୍ୟକ୍ତିତ୍ୱର ନିମ୍ନ ଲିଖିତ କେତୋଟି ଦିଗ ଉପରେ ମୂଲ୍ୟାୟନ କରାଯାଇଛି ।

୧ । ଶିଶୁର ମାନସିକ ଓ (ବୌଦ୍ଧିକ ସୃଜନାତ୍ମକ) ଅଭିବୃଦ୍ଧି ଓ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକା ।

୨ । ଶିଶୁର ସ୍ୱାସ୍ଥ୍ୟ ସଚେତନତା ଓ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକା ।

୩ । ବିଜ୍ଞାନମୁଖୀ ଶିଶୁ ଓ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକାର ଭୂମିକା ।

୪ । ଶିଶୁର ନୈତିକ ବିକାଶ ଓ ଚରିତ୍ର ଗଠନ ଦିଗରେ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକାର ଭୂମିକା ।

୫ । ଶିଶୁର ସାହସିକ କୃତି ବିକାଶରେ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକା ।

୬ । ଶିଶୁର ଚିତ୍ତବିନୋଦନ ଓ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକା ।

ବର୍ତ୍ତମାନ ଉପରୋକ୍ତ ପ୍ରସଙ୍ଗମାନଙ୍କୁ ବିଷୟଗତ ବିଶ୍ଳେଷଣ (Content analysis) ଭିତ୍ତିରେ ପରୀକ୍ଷା କରାଯାଇପାରେ ।

୧ । ଶିଶୁର ମାନସିକ, ବୌଦ୍ଧିକ ଓ ସୃଜନାତ୍ମକ ଅଭିବୃଦ୍ଧି ଓ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକା :

ଶିଶୁର ମାନସିକ ବିକାଶକୁ ବୌଦ୍ଧିକ ଚିନ୍ତନ (Convergent Thinking) ଏବଂ ସୃଜନାତ୍ମକ ଚିନ୍ତନ (Divergent Thinking) ରୂପେ ଗ୍ରହଣ

କରାଯାଇପାରେ । ବୌଦ୍ଧିକ ଚିନ୍ତନ ଦ୍ୱାରା କୌଣସି ସମସ୍ୟା ବା ପ୍ରଶ୍ନର ଏକା ସଠିକ୍, ନିର୍ଭୁଲ ଉତ୍ତର ବା ସମାଧାନ ସୀମିତ ସମୟ ଭିତରେ ପାଇବାର ପ୍ରତ୍ୟାଶା କରାଯାଏ । ଏହିପରି ଅନେକ ପ୍ରଶ୍ନ ବା ସମସ୍ୟାଗୁଡ଼ିକର ଯଥାର୍ଥ ଉତ୍ତର ଦେବାରେ ଶିଶୁର ଯୁକ୍ତି, ଚତୁରତା, ସ୍ମରଣଶକ୍ତି ତଥା ସଂଖ୍ୟା ଓ ଜ୍ଞାନର ପ୍ରୟୋଗ ଅହେତୁକ ବହୁତେ ନିୟୋଜିତ ହୋଇଥାଏ । ଏପରିକି ଶିଶୁର ଶବ୍ଦ ଜ୍ଞାନ (vocabulary) ମଧ୍ୟ ତା'ର ବୌଦ୍ଧିକ ଚିନ୍ତନର ପରିସରଭୁକ୍ତ । ଆଲୋଚ୍ୟ ଶିଶୁ-ସାହିତ୍ୟ ପତ୍ରିକାମାନଙ୍କୁ ଅଧ୍ୟୟନ କଲେ ଶିଶୁର ବୌଦ୍ଧିକ ଶକ୍ତିର ବିକାଶ ତଥା ବିନିଯୋଗ ପାଇଁ ଏଗୁଡ଼ିକ କେତେଦୂର ସହାୟକ ସ୍ପଷ୍ଟ ହୋଇଯାଏ । (କ) 'ଜହ୍ନମାମୁଁ'ରେ ପ୍ରତ୍ୟେକ ଭାରତୀୟ ଭାଷାରେ ମଣିଷ ଶବ୍ଦର ୧୬ଟି ପ୍ରତିଶବ୍ଦ ଯଥାଭାବେ ଦିଆଯାଇ ଶିଶୁର ଶବ୍ଦଜ୍ଞାନ ବୃଦ୍ଧି କରାଯାଇଛି । (ଖ) 'ମୀନାବଜାର' ଅନ୍ତର୍ଗତ ଚିତ୍ରଧନ୍ଦା ଶୀର୍ଷକରେ ଅଷ୍ଟାକୃତ ଓ ବୃତ୍ତକୁ ଲାଗି ରହିଥିବା ଏକ ଚିତ୍ରକୁ ଲକ୍ଷ୍ୟକରି ପ୍ରଶ୍ନ ରହିଛି । ଉଦାହରଣ– କହିଲେ ଦେଖି, ଅଷ୍ଟାକୃତ କ୍ଷେତ୍ର ବଡ଼ ନା ବୃତ୍ତ ବଡ଼ । ଏହାବୁଦ୍ଧି ପରୀକ୍ଷଣ ଅନ୍ତର୍ଗତ spatial relation testର ଏକ ଉଦାହରଣ ଅଟେ । (ଗ) 'ଶିଶୁଲେଖା'ରେ ଚିତ୍ର ଦେଖାଇ) ଛୁଞ୍ଚି ସାଙ୍ଗକୁ ସୂତା ଆଉ କାହା ସାଙ୍ଗକୁ କିଏ ? ଏହି ପତ୍ରିକାରେ ଚିତ୍ରଦେଖି ଶିଶୁକୁ ଦୁଇଟି ବସ୍ତୁ ମଧ୍ୟରେ ସମ୍ପର୍କ ଦର୍ଶାଇବାକୁ ହୁଏ । ଏହା ବର୍ଟଙ୍କ ସାଦୃଶ୍ୟ ପରୀକ୍ଷଣ ' Burt's analogy test) ଅନ୍ତର୍ଭୁକ୍ତ । (ଘ) ଅପୂର୍ଣ୍ଣାଙ୍ଗ ଚିତ୍ର ଦେଖାଇ କେଉଁ ଅଂଶ ହେଲେ ଚିତ୍ରଟି ସମ୍ପୂର୍ଣ୍ଣ ହେବ ? ଏହା ବୁଦ୍ଧି ପରିକ୍ଷଣର "ଚିତ୍ର ପୂର୍ଣ୍ଣକର" (Picture Compition) ପର୍ଯ୍ୟାୟଭୁକ୍ତ । (ଙ) "ନୂଆ ଶବ୍ଦ ଦରକାର" ଶୀର୍ଷକରେ କେତୋଟି ଶବ୍ଦର ସମର୍ଥବୋଧକ ନୂଆ ଶବ୍ଦଟିଏ ଶିଶୁକୁ ଯୋଡ଼ିବାକୁ ପଡ଼ିଥାଏ । ଏହାଦ୍ୱାରା ଶିଶୁର ଶବ୍ଦଜ୍ଞାନର ପରିଚୟ ତଥା ପ୍ରୟୋଗ କୁଶଳତା ବୃଦ୍ଧି ପାଏ । ଏହା ପ୍ରାଥମିକ ମାନସିକ ଦକ୍ଷତା ପରୀକ୍ଷଣ ଅନ୍ତର୍ଭୁକ୍ତ । (ଚ) ଗୋଲକ ଧନ୍ଦା (ଚିତ୍ର ଦେଖାଇ) ଗୋଟିଏ ଗାର ଟାଣି ତିନୋଟି ତ୍ରିକୋଣିଆ ଡାର ଆଙ୍କିବାକୁ ହେବ ଅଥଚ କାଗଜରୁ କଲମ ଉଠିବ ନାହିଁ କି ଗାର ଉପରେ ଗାର ପଡ଼ିବ ନାହିଁ, ଏପରିକି ଗାରକୁ ଗାର କାଟିବ ନାହିଁ । ଏହି ସମସ୍ୟାଟି ଶିକ୍ଷା ତଥା ମନସ୍ତତ୍ତ୍ୱ ସମ୍ପର୍କିତ ଗବେଷଣାରେ ବହୁ ବ୍ୟବହୃତ ଭାଟିଆ ବ୍ୟାଟେରୀ ବୁଦ୍ଧି ପରୀକ୍ଷଣ ଏକ ଉପପରୀକ୍ଷଣ ଯାହାକି, "Paper Pencil Test'' ନାମରେ ମଧ୍ଯ ନାମିତ ଅଟେ । (ଛ) 'ଟୁଇକୁମୁନି'ରେ ତୁମପାଇଁ ଧନ୍ଦା ଶୀର୍ଷକରେ ଅତି ସୁନ୍ଦର ରୂପ ଧନ୍ଦାଟି ଉପସ୍ଥାପନ ହୁଏ ।

"ପାଞ୍ଚଟି ଅକ୍ଷରେ ନାମ ତାହାର

ଗାଣିତିକ ସୂତ୍ର ହେବ ଉତ୍ତର

ପ୍ରଥମ, ୨ୟ, ୪ର୍ଥ ଯୋଗେ

ବାସ୍ତୁ ଅନ୍ୟଅର୍ଥ ବୁଝାଏ ଆଗେ

ଶେଷ ତିନିଗୋଟି ଅକ୍ଷର ମିଶି

କାରକ ଗୋଟିଏ ଥାଏ ପ୍ରକାଶି

୩ୟ, ୪ର୍ଥ ଦେଲେ ମିଶାଇ

ସୂର୍ଯ୍ୟଙ୍କ ନିକଟୁ ପାଇବ ଭାଇ

୪ର୍ଥ, ୧ମ ଯେବେ ମିଶିବ

ଯୁଦ୍ଧ ଅର୍ଥଟିକୁ ପ୍ରକାଶୁ ଥିବ ।"

ଏହି ଧନ୍ଦା (Riddle) ବା ନାଁ ଦିଆ ବୌଦ୍ଧିକ ଗଭୀରତାର ଦ୍ୟୋତକ । ଏହା ସମ୍ପର୍କରେ ଡ. କୁଞ୍ଜବିହାରୀ ଦାଶ କହନ୍ତି, ମଣିଷର ଚିନ୍ତା ପ୍ରବୃତ୍ତିର ନାଁ ଦିଆର ଜନ୍ମ ।।୩।। । କେହି କେହି ଏହାକୁ ବୁଦ୍ଧି ପରିମାପକ word game ର ଆଖ୍ୟା ଦେଇଥାନ୍ତି ।

## ଚିରନ୍ତନର ଅନ୍ୟ ଦିଗ

ସୃଜନାତ୍ମକ ଚିନ୍ତନ (Divergent Thinking)ର ଜନକ Prof. Lima Hudsonଙ୍କ ଅନୁସାରେ ଶିଶୁ କୌଣସି ପ୍ରଶ୍ନର ବହୁଳ ସମ୍ଭାବ୍ୟ ଉତ୍ତର ଦେବାର ସକ୍ଷମ ହୁଏ ନିଜର କଳ୍ପନା ଓ ମୁକ୍ତ ଚିନ୍ତନ (opened mind)ର ବିନିମୟରେ । Prof. Carl Rogers ସୃଜନଶୀଳତାର ଅଭିବୃଦ୍ଧି ପାଇଁ ମାନସିକ ସୁରକ୍ଷା ଓ ମାନସୁକ ସ୍ୱାଧୀନତା ଆବଶ୍ୟକ ବୋଲି ତାଙ୍କର ଲେଖାଗୁଡ଼ିକରେ ମତବ୍ୟକ୍ତ କରିଛନ୍ତି ।।୪।। ।ଶିଶୁ କୌଣସି ସମସ୍ୟାର ସୃଜନାତ୍ମକ ଉତ୍ତର/ସମାଧାନ ଦେବାକୁ ଯାଇ ତା'ର କଳ୍ପନା, ମୁକ୍ତ ଚିନ୍ତନ (free thinking) ର ବିନିମୟରେ ଏକାଧିକ (ବା ବହୁଳ) ସମ୍ଭାବ୍ୟ ଉତ୍ତର ଦେଇଥାଏ ଏବଂ ପରୀକ୍ଷଣରେ ଶିଶୁକୁ ସମୟର ପୂର୍ଣ୍ଣ ସ୍ୱାଧୀନତା ଦିଆଯାଇ ଥାଏ । ପ୍ରଶ୍ନଟିର କୌଣସି ଠିକ୍ ବା ଭୁଲ୍ ଉତ୍ତର ନ ଥାଏ । ଶିଶୁ-ସାହିତ୍ୟ ପତ୍ରିକା ଶିଶୁ ସୃଜନଶୀଳତାକୁ ବୃଦ୍ଧିବାକୁ ଓ ପ୍ରେରଣା ଦେବାକୁ ସଚେଷ୍ଟ ତେବେ ସେହି ଗୌରବ ନିର୍ଦ୍ଦିଷ୍ଟ ରୂପେ କେବଳ ମାତ୍ର "ଶିଶୁଲେଖା'ରେ ରହିଛି ବୋଲି ମୁକ୍ତ କଣ୍ଠରେ କୁହାଯାଇ ପାରେ । କିନ୍ତୁ ସେତିକି ଯଥେଷ୍ଟ ନୁହେଁ । ଏବେ ସୁଦ୍ଧା ଶିଶୁ ସୃଜନଶୀଳତାର କେତେକ ଦିଗ ଆମର ଅଜ୍ଞତା ତଥା ସୀମିତ ଜ୍ଞାନ ଯୋଗୁଁ ଅନାବିଷ୍କୃତ ହୋଇ ରହିଛି ଓ ସେଥିପାଇଁ ଶିଶୁ ସାହିତ୍ୟମାନଙ୍କରେ ଏଗୁଡ଼ିକ ଉପଯୋଗ ହୋଇ ପାରିନାହିଁ । ଶିଶୁ ଲେଖାରେ (ଦୁଇଟି ଚିତ୍ର ଦେଖାଇ) ଛବି ଦୁଇଟି ଭିତରେ ଥିବା ପାର୍ଥକ୍ୟ (ଏକାଧିକ) ଦେଖାଇବାକୁ ସୂଚିତ କରାଯାଇଛି । ଆହୁରି ମଧ୍ଯ "କାଗଜ ଦିଅ କଇଁଚି ଦିଅ ଖେଳନାଗୁଡ଼ିଏ ନିଅ" ଶୀର୍ଷକରେ ଚୀନ୍ ଦେଶର ଖେଳଣା ପ୍ରସଙ୍ଗରେ ସୂଚନା ଦେବା ସଙ୍ଗେ ସଙ୍ଗେ ବର୍ଗାକାର କାଗଜ ପଟାକୁ ଟେସ୍‌ବୋର୍ଡ଼ ପରି ପେନ୍‌ସିଲ୍‌ରେ ଗାର କାଟି ତା'ର ଉପରେ ଡେରଛା ଗାର ଡଟ୍ ପେନ୍‌ରେ ଟାଣି ତଦନୁସାରେ ଖଣ୍ଡ ଖଣ୍ଡ କାଟି ଏଗୁଡ଼ିକ ବିରାଡ଼ି, କୁକୁର, ହଂସ ପ୍ରଭୃତି ବହୁ ଖେଳଣା ପ୍ରସ୍ତୁତ କରାଯାଇ ପାରିବ ବୋଲି ଉଲ୍ଲେଖ ଅଛି । ଏହି ଖେଳଣାଗୁଡ଼ିକ ତିଆରି କରିବାରେ ଶିଶୁ ତା'ର କଳ୍ପନା, ପରିବର୍ତ୍ତନଶୀଳ ଚିନ୍ତନ ଶକ୍ତି (flexibility thinking)ର ପ୍ରୟୋଗ କରି ଏକାଧିକ ବିଭିନ୍ନ ତଥା ସ୍ୱତନ୍ତ୍ର ଖେଳଣା ପ୍ରସ୍ତୁତ କରିବାକୁ ସକ୍ଷମ ହୁଏ । ଶିଶୁର କାର୍ଯ୍ୟକ୍ଷମତା ତା'ର ସମବୟସ୍କ ସାଥୀମାନଙ୍କର କ୍ଷମତା ଉପରେ ଏକ ତୁଳନାତ୍ମକ ଅନୁଶୀଳନ ଦ୍ୱାରା ଶିଶୁର-ଚିନ୍ତନ ଶକ୍ତିର ବ୍ୟକ୍ତି ସ୍ୱାତନ୍ତ୍ର୍ୟତା (originality)ର ପରିଚୟ ମିଳିଥାଏ ।

ଏକ ସୃଷ୍ଟିଶୀଳ ଶିଶୁ ପତ୍ରିକା ଯେ କେବଳ ଶିଶୁର କଳ୍ପନା ରାଜ୍ୟକୁ ସରସ କରେ ତା'ନୁହେଁ; ଶିଶୁର ସୃଜନଶୀଳ ସୃଷ୍ଟି (creative production) କୁ ନିଜ କୋଳରେ ସ୍ଥାନଦେଇ ତ୍ୱରାନ୍ୱିତ ମଧ୍ୟ କରିଥାଏ । ଏହା ଦ୍ୱାରା ଅନ୍ୟ ପାଠୁଆ ଶିଶୁମାନେ ନିଜର ସୃଷ୍ଟିପ୍ରତି ସଚେତନ ହେବା ସାଙ୍ଗକୁ ଉତ୍ସାହିତ ମଧ୍ୟ ହୋଇଥାନ୍ତି । ଶିଶୁ ସାହିତ୍ୟ ପତ୍ରିକାରେ ଶିଶୁମାନଙ୍କର ସ୍ୱରଚିତ କବିତା, କାହାଣୀ, ପ୍ରବନ୍ଧ ଏପରିକି ଚିତ୍ର ମଧ୍ୟ ସ୍ଥାନପାଇବା ଉଚିତ । ଏଥିରେ ଅବଦାନ ଥିବା ଶିଶୁର ନାମ, ଶ୍ରେଣୀ ଏବଂ ଠିକଣା ରହିବା ବାଞ୍ଛନୀୟ । ପୂର୍ବାଲୋଚିତ ଶିଶୁ ପତ୍ରିକାମାନଙ୍କରୁ କେବଳ "ଶିଶୁଲେଖା"ରେ ଶିଶୁର ସୃଷ୍ଟିଶୀଳ ଆତ୍ମପ୍ରକାଶ ପାଇଁ ଦୁଇଟି ବିଭାଗ ରହିଛି ଯଥା– "ପିଲାଙ୍କ କଲମରୁ" ଏବଂ "ଶିଶୁଚିତ୍ର" ବା "ମୋ ତୁଳୀ ମୋ ଛବି" । ଶିଶୁ ସୃଜନଶୀଳତାର ଆତ୍ମପ୍ରକାଶ ପାଇଁ ଏହାର ପ୍ରେରଣା କିଛି କମ୍ ନୁହେଁ । ଏହାଦ୍ୱାରା ଶିଶୁର ସୃଜନଶୀଳ ପ୍ରଣୋଦନା creative motivation)ର ଅଭିବୃଦ୍ଧି ସାଧିତ ହୋଇ ଥାଏ । ଏହା ମାଧ୍ୟମରେ ପିଲାଦିନୁ ଶିଶୁ ନିଜକୁ ଅନ୍ୟ ଆଗରେ ପ୍ରକାଶ କରିବାର ଦକ୍ଷ, ସାହସ ବାଢ଼ିଥାଏ । ଆଶାବ୍ୟୀ ହୁଏ ଆଗାମୀ ଦିନଗୁଡ଼ିକ ପାଇଁ ।

ଶିଶୁ ସାହିତ୍ୟ ପତ୍ରିକାରେ ଏହିପରି ବହୁଗୁଡ଼ିଏ କଳ୍ପନା ପ୍ରବଣ ପ୍ରଶ୍ନପତ୍ର ଦିଆଯାଇ ପାରିବ ଯାହାକି ଶିଶୁର ସୃଜନଶୀଳତାର ପରିଚୟ ପାଇବା ସଙ୍ଗେ ସଙ୍ଗେ ପ୍ରେରଣାର ଉତ୍ସ ହୋଇ ରହିବ । ନିମ୍ନରେ କେତେଗୁଡ଼ିଏ ଉଦାହରଣ ପ୍ରଦତ୍ତ କରାଗଲା ।

* ଗୋଟିଏ ଦୁଇଟି ପରିଛେଦରେ କାହାଣୀ ଲେଖି କାହାଣୀଟିରେ ଯେତେଗୁଡ଼ିଏ ସମ୍ଭାବ୍ୟ ଶୀର୍ଷକ ଦିଆଯାଇପାରେ ସେଗୁଡ଼ିକର ନାମ ଲେଖିବାକୁ ନିର୍ଦ୍ଦେଶ ଦେବ । (Find out the titles)

* ନିଜେ ବ୍ୟବହାର କରୁଥିବା ଖେଳଣା (ଯେକୌଣସିର) କେଉଁ କେଉଁ ପରିବର୍ତ୍ତନ କଲେ ତୁମେ ସେଥିରୁ ଅଧିକ ଆନନ୍ଦ ପାଇପାରିବ । (Product Improvement).

* ବିରାଡ଼ି ଓ ମୂଷା ମଧ୍ୟରେ କି କି ସାମଞ୍ଜସ୍ୟ ଅଛି କୁହ ? (Similarities).

* ତୁମେ ଦେଖୁଥିବା କାଗଜ ଖଣ୍ଡକୁ କି କି ପ୍ରକାରେ ବ୍ୟବହାର କରିପାରିବ । (Unusual uses).

* ଯଦି ହଠାତ୍ ଆକାଶ ତୁମ ପାଖକୁ ଖସି ଆସି ଥାଆନ୍ତା । କ'ଣ ହୁଅନ୍ତା ? Just Suppose).

* ପୃଥିବୀର ସମସ୍ତେ ଯଦି ଗରିବ ହୋଇଥାନ୍ତେ କ'ଣ ହୁଅନ୍ତା ? (just suppose: Situational test) ॥୫॥

ଉପରୋକ୍ତ ପ୍ରଶ୍ନଗୁଡ଼ିକ ପାଇଁ କୌଣସି ସମୟ ସୀମା ନାହିଁ । ଏହି ପ୍ରଶ୍ନମାନଙ୍କର କୌଣସି ଠିକ୍ କିମ୍ବା ଭୁଲ୍ ଉତ୍ତର ନାହିଁ । ଏହି ପ୍ରଶ୍ନମାନଙ୍କର ସମ୍ଭାବ୍ୟ ଉତ୍ତରଗୁଡ଼ିକୁ ଶିଶୁ ସ୍ୱାଧୀନ ଭାବେ ନିଃସଙ୍କୋଚରେ ଦେବେ ॥୬॥ । ଏହି ଆଲୋଚକଙ୍କର ଶିଶୁ ସୃଜନଶୀଳତା– "ପରିଚୟ, ପ୍ରେରଣା ଓ ପରିମାପକ" ଏବଂ "କଳ୍ପନାର ପରିଧିରେ ଶିଶୁ" (ପ୍ରକାଶ ଅପେକ୍ଷାରେ) ପୁସ୍ତକ ଦ୍ୱୟରୁ ଶିଶୁ ସାହିତ୍ୟିକ, ସମ୍ପାଦକ, ଶିକ୍ଷକ ତଥା ପିତାମାତା ବହୁ ଉପାଦେୟ ତଥ୍ୟ ପାଇ ପାରିବେ ।

## (୨) ଶିଶୁର ସ୍ୱାସ୍ଥ୍ୟ ସଚେତନତା ଏବଂ ଓଡ଼ିଆ ଶିଶୁ ସାହିତ୍ୟ ପତ୍ରିକା

ବିଦ୍ୟାଳୟ ପରିବେଶ ଭିତରେ ପାଠ୍ୟ ପୁସ୍ତକଗୁଡ଼ିକରୁ ଶିଶୁର ସ୍ୱାସ୍ଥ୍ୟ ସଚେତନତା ଗଢ଼ି ଉଠିଥାଏ । ଦେଖାଯାଉ କେତେଦୂର ଆମର ଶିଶୁ ପତ୍ରିକା ସେହି ଉପାଦେୟ ଖୋରାକ ଶିଶୁ ପାଇଁ ଯୋଗାଉଛି । "ଜହ୍ନ ମାମୁଁ"ରେ ଜ୍ଞାନର ଆନନ୍ଦ ସ୍ତମ୍ଭରେ "ଆଖିର ଆବରଣ" । "ମୀନା ବଜାର"ରେ "ରଞ୍ଜନ ରଶ୍ମି", "ମୁଣ୍ଡିର ରହସ୍ୟ" । "ମନ ପବନ"ରେ "ଶରୀର ଗଠନ" । "ଶିଶୁ ଲେଖା"ରେ ତଥ୍ୟମୂଳକ ସ୍ତମ୍ଭରେ "ଦକ୍ଷିଣକୁ ମୁଣ୍ଡକରି", "ଗାଈ ସବୁର ମା", "କେତେ ମିଠା ସାକାରିନ୍ କି ମହୁ କି ଚିନି" "ଯେଉଁମାନେ ଆମ ସହିତ ଆରାମରେ ରହୁଛନ୍ତି (ମାଛି)", "ଗଛ ମହାତ୍ମା", "ଆମ ଘରେ ଆମ ସହିତ ରହୁଥିବା ଜୀବଜନ୍ତୁ (ବେଙ୍ଗ)" । "ଟୁକୁମୁଣି"ରେ ଦରକାର ବେଳେ କାମରେ ଆସିବ" ସ୍ତମ୍ଭରେ "ଅଦା ଓ ଗୁଣ୍ଠିର ଗୁଣ", "ଜାଣିବା କଥା" ସ୍ତମ୍ଭରେ "ଦୁବ ଘାସର ଗୁଣ", "ମାଁଟି ମୋର ମିଠା" (ଗୀତ) । "ବାଗମଜା"ରେ "ମହୁର ଗୁଣ" । "ଟିକି ଫୁଲ"ରେ "ଆମର ଦେହ" ଇତ୍ୟାଦି ଶିଶୁର ସ୍ୱାସ୍ଥ୍ୟ ଓ ପରିବେଶ ସଚେତନତାର ପରିବାହକ ।

## (୩) ବିଜ୍ଞାନ ମୁଖ୍ୟ ଶିଶୁ ଓ ଓଡ଼ିଆ ଶିଶୁ ସାହିତ୍ୟ ପତ୍ରିକାର ଭୂମିକା :

"Science is vastly more stimulating the imagination than are classics."
—J. B. S. Haldane

ମଣିଷର କଳନା ରାଜ୍ୟକୁ କଳା ଓ ସାହିତ୍ୟଠାରୁ ବିଜ୍ଞାନ ବିଶେଷ ଭାବରେ ପ୍ରେରଣା ଦେଇଥାଏ । ଦେଶ ଆଜିକାଲି ପ୍ରାଚୀନ ଅନ୍ଧ ବିଶ୍ୱାସ, କୁସଂସ୍କାରକୁ ପଛରେ ପକାଇ ବୈଜ୍ଞାନିକ ଚିନ୍ତାଧାରା ନେଇ ଆଗେଇ ଚାଲିଛି । ଯୁଗର ପରିବର୍ତ୍ତନ ସାଙ୍ଗକୁ ତାଳ ଦେଇ ଶିଶୁ–ସାହିତ୍ୟ ପରିବର୍ତ୍ତନ ହୋଇ ଚାଲିଛି । ଆଜିର "ଆ ଜହ୍ନ ମାମୁଁ" ଶୁଣୁଥିବା ଶିଶୁ ଚାହିଁଛି ରକେଟ ଚଢ଼ି ଚନ୍ଦ୍ର ଦେଶରେ ପାଦ ଦେବା ପାଇଁ । ସେ ପ୍ରତ୍ୟେକଟିକୁ ପ୍ରତ୍ୟକ୍ଷ ଭାବରେ ପରୀକ୍ଷା ନିରୀକ୍ଷା କରି ସତ୍ୟତା ଜାଣିବା ପାଇଁ ଆଗ୍ରହୀ । ତେଣୁ ଶିଶୁଅବସ୍ଥାରେ ତା'ର ମାନସ ପଟରେ ବିଜ୍ଞାନ ମୁଖ୍ୟ ଚିନ୍ତାଧାରା (scientic temper) ଜାତ କରାଇ ଶିଶୁର ପ୍ରତ୍ୟେକ କାର୍ଯ୍ୟକଳାପକୁ ବିଜ୍ଞାନର କଷଟି ପଥରରେ ମୂଲ୍ୟାୟନ କରିବାକୁ

ହେବ । ଶିଶୁକୁ ବିଜ୍ଞାନଧର୍ମୀ କରିବା ପଛରେ ଆମ ପରିବେଶର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ପରିବେଶରୁ ମିଳୁଥିବା ଉପାଦାନଗୁଡ଼ିକ ବର୍ତ୍ତମାନ ଶିଶୁ-ସାହିତ୍ୟ ପତ୍ରିକା ମଧ୍ୟରେ କିପରି ପରିବେଷିତ ହୋଇଯାଉଛି ସେଗୁଡ଼ିକୁ ଦେଖାଯାଉ !

ଆଲୋଚନା ପାଇଁ ନିଆଯାଇଥିବା ନଅଗୋଟି ଶିଶୁପତ୍ରିକାଗୁଡ଼ିକରୁ ଅଧିକାଂଶ ପତ୍ରିକାରେ ଏହାର ସ୍ଥିତି ରହିଥିବାର ଲକ୍ଷ୍ୟ କରାଯାଏ । ଯଥା :-"ଜହ୍ନମାମୁଁ"ରେ ବିଜ୍ଞାନର ଆନନ୍ଦ ସ୍ତମ୍ଭରେ "ଆଖି ଓ ଗୁଣ", "ଜଳର ଆକର୍ଷଣ", "ମୀନାବଜାର"ରେ "ରାମନ ରଶ୍ମି", "ସୃଷ୍ଟିର ରହସ୍ୟ" ସ୍ତମ୍ଭରେ "ବାୟୁମଣ୍ଡଳ", କାଗଜର କାହାଣୀ", "ଶିଶୁଲେଖା"ରେ "କମ୍ପ୍ୟୁଟରର ଭାଷା", "ସାପ ଆମର ଉପକାରୀ", "ଗଛ ଆମ ଜୀବନ", "କମ୍ପ୍ୟୁଟର କିପରି ଅଙ୍କ କଷେ", ଟୁଉକୁମୁଣି"ରେ ବିଜ୍ଞାନ ବିଚିତ୍ରା, "ବାରମଜା"ରେ "ବିଜ୍ଞାନ ବିଚିତ୍ରା" ସ୍ତମ୍ଭରେ "ସୂର୍ଯ୍ୟ ରଶ୍ମିଯୁକ୍ତ ଗ୍ଲୁ", କମ୍ପ୍ୟୁଟରରେ "ବନ୍ୟ ପ୍ରାଣୀଙ୍କ ବିବାହ", "ଟିକିଫୁଲ"ରେ "ଆମ ଦେହ", "ବିଶ୍ୱାସ କର ବା ନ କର", "ଦୁଇପାଦ ସମାନ ନୁହେଁ କାହିଁକି ?" "ଜ୍ଞାନ ବିଜ୍ଞାନ", "କୁଇଜ", "ଟିକି ଦୁନିଆ"ରେ "ଏଡ଼ିସନ୍‌ଙ୍କ ପିଲାଦିନ" ଇତ୍ୟାଦି ପରିବେଷିତ କରା ଯାଇଛି । ଏହା ଫଳରେ ଶିଶୁ ମନରେ କୌତୂହଳ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ସୃଷ୍ଟି ରହସ୍ୟକୁ କ୍ରମେ କ୍ରମେ ଜାଣିବା ପାଇଁ ଆଗ୍ରହ ସୃଷ୍ଟି ହୋଇଛି ।

## (୪) ଶିଶୁର ନୈତିକ ବିକାଶ ଓ ଚରିତ୍ର ଗଠନ ଦିଗରେ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକାର ଭୂମିକା

ଆଜିର ବାସ୍ତବବାଦୀ ସମାଜରେ ମୂଲ୍ୟବୋଧର ଯେଉଁ ସଙ୍କଟ ଦେଖା ଦେଇଛି ସେ ଭିତରୁ ମଣିଷର ନୈତିକ/ଚାରିତ୍ରିକ ମୂଲ୍ୟବୋଧର ଅଧୋପତନ ଅନ୍ୟତମ । ଏବେ ଦେଖାଯାଉ ଶିଶୁର ନୈତିକମାନର ବୃଦ୍ଧି ପାଇଁ ମିଳୁଥିବା ଶିଶୁ-ସାହିତ୍ୟ ପତ୍ରିକା କେତେଦୂର ସହାୟକ ।

"ଜହ୍ନମାମୁଁ"ରେ ଉଦାହରଣ ଓ ଗଳ୍ପ ମାଧ୍ୟମରେ ନ୍ୟାୟପରାୟଣତା, ଦୟା, କ୍ଷମା, ରାମାୟଣ ଓ ମହାଭାରତରେ ବର୍ଣ୍ଣିତ ବିଭିନ୍ନ ଭୂମିକାରେ ସଂଶ୍ଳିଷ୍ଟ ଥିବା ସଦ୍‌ଗୁଣଗୁଡ଼ିକର ବର୍ଣ୍ଣନା । "ମୀନାବଜାର"ରେ କୃଷ୍ଣାବତାର, ପୁରାଣ କଥା ବା କାହାଣୀରୁ ଗୁରୁଭକ୍ତି, ବଡ଼ ମଣିଷଙ୍କ ପିଲାଦିନ, ଭାଗବତର ମହିମା, ଖାଇବେଳ କାହାଣୀ । 'ମନ ପବନ'ରେ ପୁରାଣ କାହାଣୀରୁ ଗୁରୁ ଭକ୍ତି, ମହାଭାରତରୁ ଦାନବୀର କର୍ଣ୍ଣ, ପରିଶ୍ରମୀ ଦୁଅ (ଗଳ୍ପ), ଲୋଭର ପରିଣାମ (ପୁରାଣ ପୃଷ୍ଠାରୁ) । "ଶିଶୁ ଲେଖା"ରେ "ମୋ ପୈକାଳି ବଜାଇ ଦେ" (କବିତା), "ସ୍ୱଦେଶ ଚିନ୍ତନ", "ଶତ୍ରୁତାର ଫଳ", "କର୍ତ୍ତବ୍ୟ ପରାୟଣତା" (ପଶ୍ଚିମ ଓଡ଼ିଶାର ସମ୍ବଲପୁରୀ ସଙ୍ଗୀତ ମାଧ୍ୟମରେ), "ଧୀରକୁ କରିବ ଆଦର" (ଗୀତ) । "ବାରମଜା"ରେ ଆମ ଦେଶର ଲୋକକଥା ମାଧ୍ୟମରେ "କୋମୀର ଫଳ" । "ଟିକିଫୁଲ"ରେ ନୀତିକଥା ସ୍ତମ୍ଭରେ ବିଭିନ୍ନ ଶୀର୍ଷକ ଯଥା :- "ରାଗ ମଣିଷର ପରମ ଶତ୍ରୁ", "ଇତିହାସ ପୃଷ୍ଠାରୁ ଅସାଧାରଣ ଆପବଳୀ" । "ଟିକି ଦୁନିଆଁ"ରେ ପୁରାଣ ପୃଷ୍ଠାରୁ "କର୍ମଫଳ" ଆଦିରେ ନୈତିକ ଓ ଚାରିତ୍ରିକ ଗଠନ ପାଇଁ ଉଦ୍ଦିଷ୍ଟ ରହିଛି ।

## (୫) ଶିଶୁର ସାହସିକ କୃତି ବିକାଶରେ ଓଡ଼ିଆ ଶିଶୁ-ସାହିତ୍ୟ ପତ୍ରିକା

କଳା ହେଉ ବା ବିଜ୍ଞାନ ହେଉ, ସାହିତ୍ୟ ହେଉ ବା କାରିଗରୀ ହେଉ ଯେକୌଣସି କ୍ଷେତ୍ରରେ ଅଭିବୃଦ୍ଧିର ଚରମ ସୀମାରେ ପହଞ୍ଚିବା ଏକ ଆଶାବାଦୀ ଓ ପ୍ରଗତିଶୀଳ ସମାଜର ପ୍ରଧାନ ଲକ୍ଷ୍ୟ । ଯଦି କୌଣସି ଦେଶ ବା ଜାତି କେବେ ଗର୍ବ ଓ ଗୌରବ ଅନୁଭବ କରେ, ତେବେ କେତେକ ସ୍ୱଳ୍ପସଂଖ୍ୟକ ସାହାସିକ କୃତୀ ସମ୍ପନ୍ନ ବ୍ୟକ୍ତିଙ୍କୁ ନେଇ । ଏହା ଯାହାକି ନିର୍ଭର କରେ ବ୍ୟକ୍ତିର ସାହାସିକ କୃତିକୁ ବୁଝିବାରେ, ପ୍ରଶଂସା କରିବାରେ ଓ ବ୍ୟକ୍ତି-ବିଶେଷର ଏପରିକି ଶିଶୁମାନଙ୍କଠାରେ ସେହି ସାହାସିକ କୃତିକୁ ପ୍ରେରଣା ଦେବାରେ । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କଲେ ଜଣାପଡ଼େ ଯେ, ସାହାସିକ କୃତି ବା ସଫଳତା ମୁଖୀ ଅଭିପ୍ରେରଣା (Achievement Motive) ଜନ୍ମଗତ ନୁହେଁ ॥୭॥ ବରଂ ପରିବେଶଗତ ପ୍ରେରଣା, ସମାଜରୁ ମିଳୁଥିବା ଉତ୍ସାହ-କୁସଂସ୍କାର ଓ ଅନ୍ଧବିଶ୍ୱାସ ରହିତ ସାମାଜିକ ଜୀବନ ହିଁ ଏହାର ପାଥେୟ । ବାଲ୍ୟବସ୍ଥା ହେଉଛି ପ୍ରକୃତ ସମୟ କାରଣ ଏହି ବାଲ୍ୟ ବୟସରୁ ହିଁ ଶିଶୁର ଅଭ୍ୟାସ ଓ ମନୋବୃତ୍ତି ଗଠିତ ହୁଏ, ଉତ୍ସାହ ବଢ଼େ, ବ୍ୟକ୍ତିତ୍ୱ ଏକ ନିର୍ଦ୍ଦିଷ୍ଟ ରୂପ ନିଏ । କେବଳ ବାଲ୍ୟକାଳରୁ ହିଁ ଶିଶୁଠାରେ ସ୍ୱାଭିମାନୀ, ପରିଶ୍ରମୀ, ସହଯୋଗିତା ଓ ପ୍ରତିଯୋଗିତା ଭିତ୍ତିକ ମନୋବୃତ୍ତି, କିଛି ନୂତନତ୍ୱ ସୃଷ୍ଟି କରିବାର ଅଭିପ୍ରେରଣା, ଆତ୍ମବିଶ୍ୱାସ ପ୍ରଭୃତି ମୂଲ୍ୟବୋଧ ପୋଷଣ କରାଯାଇ ପାରେ ।

ତେଣୁ ଶିଶୁ କିପରି ଉପରୋକ୍ତ ସୁଗୁଣଗୁଡ଼ିକର ଅଧିକାରୀ ହୋଇପାରିବ, ତାହା ଦେଖିବା ସମାଜର ପ୍ରତ୍ୟେକ ଦାୟିତ୍ୱ ସମ୍ପନ୍ନ ବ୍ୟକ୍ତିଙ୍କର କର୍ତ୍ତବ୍ୟ ॥୮॥ ମନସ୍ତତ୍ତ୍ୱ କୁହେ ସାହସିକ କୃତି ବସ୍ତୁତଃ ଏକ ମାନସ ପ୍ରକ୍ରିୟା ଏବଂ ତାହା ସାମାଜିକ ତଥା ସାଂସ୍କୃତିକ ପୀଢ଼ ଉପରେ ଆଧାରିତ । ଯାହାକି ଶିକ୍ଷା କରାଯାଇ ପାରେ, ଯେହେତୁ ଏହା ଶିକ୍ଷଣୀୟ ତେଣୁ ବ୍ୟକ୍ତିଠାରେ ଏହାର ଅଭିବୃଦ୍ଧିର ସମ୍ଭାବନା ରହିଛି (ଶର୍ମା, ୧୯୮୭) । ବର୍ତ୍ତମାନ ଦେଖାଯାଉ ଶିଶୁ ପାଖରେ ପହଞ୍ଚୁଥିବା ଶିଶୁ-ସାହିତ୍ୟ ପତ୍ରିକାରେ ତା'ର ସାହସିକ କୃତିକୁ ତ୍ୱରାନ୍ୱିତ କରୁଥିବା ଉପାଦାନ କେତେ ପରିମାଣରେ ମହଜୁଦ୍ ଅଛି ।

"ଜହ୍ନମାମୁଁ"ରେ ଫଟୋ ପରିଚୟ ଶୀର୍ଷକରେ ସାହସିକତା କୃତିସମ୍ପନ୍ନ କେତେକ ଚିତ୍ରକୁ, ଶିଶୁକୁ ଚିହ୍ନିତ କରାଇବାକୁ ପଡ଼ିଥାଏ । "ମୀନାବଜାର"ରେ ଫଟୋଚିତ୍ର । "ମନପବନ"ରେ ସାହସୀକୁଆ" (ଗଳ୍ପ) । "ଶିଶୁଲେଖା"ରେ ସବୁ ଉତ୍ତର ଠିକ୍ ହେଲେ ପୁରସ୍କାର ଶୀର୍ଷକରେ ୧୦ଟି ପ୍ରଶ୍ନ ଦିଆଯାଇଥାଏ । ଏହି ପ୍ରଶ୍ନ ୧୯ ବର୍ଷରୁ କମ୍ ଛାତ୍ର ଛାତ୍ରୀମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସମୟ-ସୀମା ଭିତରେ ଉତ୍ତର ପଠାଇବାକୁ ପଡ଼ିଥାଏ । ସର୍ବଶେଷରେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ପ୍ରମାଣ ପତ୍ର ଦେବେ ଯେ ଉତ୍ତରଟି ସମ୍ପୂର୍ଣ୍ଣ ରୂପେ ଛାତ୍ରର ନିଜସ୍ୱ । "ବାରମଜା"ରେ "ବୀର ବାଳକ" "ଚନ୍ଦ୍ରଗୁପ୍ତ" "ରାଜକନ୍ୟାର ସାହସିକତା"(ଇତିହାସ ପୃଷ୍ଠାରୁ) । "ଟିକିଫୁଲ"ରେ ଅସାଧାରଣ ଆସ୍ୱବଳୀ (ଇତିହାସ କଥା) ଇତ୍ୟାଦି ଏହି ଶ୍ରେଣୀର ।

## ଶିଶୁର ଚିତ୍ତବିନୋଦନ ଓ ଓଡ଼ିଆ ଶିଶୁ–ସାହିତ୍ୟ ପତ୍ରିକା

ମଣିଷ ଜୀବନରେ ବୟସ ବଢ଼ି ଚାଲିବା ସଙ୍ଗେ ସଙ୍ଗେ ହସ, ଖୁସି, ଚିତ୍ତବିନୋଦନର ପରିମାଣ ହ୍ରାସ ପାଇବାରେ ଲାଗିଛି । ଆଧୁନିକ ବସ୍ତୁବାଦୀ ମଣିଷ ସେଥିପାଇଁ ଯନ୍ତ୍ର ଉପରେ ଅଧିକ ନିର୍ଭରଶୀଳ ହୋଇପଡ଼ିଛି । ଦୈନନ୍ଦିନ ଜୀବନରୁ ମିଳୁଥିବା ହସ, ଖୁସି, ଆନନ୍ଦ, ମାନସିକ ସୁସ୍ଥତା ମଣିଷକୁ ଉପାଦେୟ ଖୋରାକ ଯୋଗାଇ ଆସିଛି । ଶିଶୁ ତା'ର ଦୈନନ୍ଦିନର ପାଠ୍ୟପୁସ୍ତକରୁ ପାଇପାରି ନ ଥିବା ହସ, ଖୁସି, ଆନନ୍ଦ, ସାଧାରଣତଃ ଶିଶୁ ସାହିତ୍ୟଠାରୁ ସଂଗ୍ରହ କରେ । ଅନ୍ୟ ସକଳ ପ୍ରକାର ସାହିତ୍ୟର ଉଦ୍ଦେଶ୍ୟ ଭଳି ଶିଶୁ ସାହିତ୍ୟର ଉଦ୍ଦେଶ୍ୟ ମଧ୍ୟ ରସ ଉଦ୍‌ବୋଧନ ବା ଅନ୍ୟ ଭାଷାରେ କହିଲେ ଆନନ୍ଦ ପ୍ରଦାନ । ତେବେ ଦେଖିବା କଥା ଶିଶୁ–ସାହିତ୍ୟ ପତ୍ରିକାଗୁଡ଼ିକରେ କେତେ ପରିମାଣରେ ସେହି ଜୀବନୀଶକ୍ତି ଛପି ରହିଛି ।

"ଜହ୍ନମାମୁଁ" ଷ୍ଟ୍ରିପକାର୍ଟୁନ ମାଧ୍ୟମରେ ଶିଶୁର ଚିତ୍ତବିନୋଦନ କରିଥାଏ । 'ମୀନା ବଜାର'ରେ ଗଳ୍ପ ମଜା କଥା; 'ମନ ପବନ'ରେ ଛୁଟିରେ ପାଠପଢ଼ା, 'ଶିଶୁ–ଲେଖା'ରେ ଶିଶୁ ଗୀତ, ଠେକୁଆ ଠକିଲା (ଗଳ୍ପ), 'ବାରମଜା'ରେ ଦେଶ ବିଦେଶର ଲୋକ କଥା, କଳରା ପତରିଆ ବାଘର ଲାଞ୍ଜ ଲୟ କାହିଁକି ? ଅଜା ନାତି କଥୋପକଥନ , "କୁନିକୁମ୍ପି"ରେ "ବଢ଼ିଆ ବ୍ୟବସାୟ" (ମଜା କାହାଣୀ) । ଏହିପରି ଚିତ୍ତବିନୋଦନ ସାମଗ୍ରୀ ଶିଶୁ–ସାହିତ୍ୟ ପତ୍ରିକାମାନଙ୍କର ସଂଯୋଜିତ ଯଦିଓ ତାହା ଯଥେଷ୍ଟ ନୁହେଁ ।

## ଶିଶୁ ସାହିତ୍ୟ ପତ୍ରିକାର କେତେକ ଅନାବଶ୍ୟକ ଦିଗ

ବର୍ତ୍ତମାନ ,ବଜାରରେ ମିଳୁଥିବା ବିଭିନ୍ନ ଓଡ଼ିଆ ଶିଶୁ ସାହିତ୍ୟ ପତ୍ରିକାଗୁଡ଼ିକର ଦୋଷ ଦୁର୍ବଳତା, ତା'ର ଉନ୍ନତିର ବିଭିନ୍ନ ଦିଗ ଉପରେ ସୁଚିନ୍ତିତ ମତ ପ୍ରଦାନ କରିବା ପାଇଁ ଏ ପ୍ରବନ୍ଧର ପ୍ରାବନ୍ଧିକ ପଚାଶ ଜଣ ଶିଶୁ ସାହିତ୍ୟିକ, ଶିଶୁ ସାହିତ୍ୟାନୁରାଗୀ, ପାଠକ, ଶିକ୍ଷାପ୍ରେମୀଙ୍କୁ ବିଶ୍ୱରକ ରୂପେ ନିରୂପଣ କରି ଏକ ପ୍ରଶ୍ନାବଳୀ ପଠାଇ ଥିଲେ ସେଥିମଧ୍ୟରୁ କେତେଜଣ ନିରୁତ୍ତର ରହିବାର ଜଣାଯାଏ । ପୁଣି କେତେଜଣ ଅଧୁନା ପ୍ରଚଳିତ ଶିଶୁ ପତ୍ରିକା ଉପରେ ତାଙ୍କର ଅଜ୍ଞତା ପ୍ରକାଶ କରି ପ୍ରଶ୍ନାବଳୀକୁ ଫେରନ୍ତ କଲେ । ସେ ଯାହାହେଉ, ସମ୍ପୂର୍ଣ୍ଣ ଉତ୍ତର ନେଇ ପହଞ୍ଚିବା ପ୍ରଶ୍ନାବଳୀରୁ ଶିଶୁ ସାହିତ୍ୟ ପତ୍ରିକାର ଦୋଷ ଦୁର୍ବଳତା ଯାହା ପରିଲକ୍ଷିତ ହୁଏ, ସେଗୁଡ଼ିକ ହେଲା :–

(୧) ଶିଶୁ ସାହିତ୍ୟ ପତ୍ରିକାରେ ଭୂତ, ପ୍ରେତ, ଡାହାଣୀ ସମ୍ପର୍କିତ ଲେଖା ପ୍ରକାଶନ । ଯେହେତୁ ଏହା ଶିଶୁର ମାନସ ରାଜ୍ୟରେ ଅହେତୁକ ଭୟ ଓ ଆଶଙ୍କା ସୃଷ୍ଟି କରିଥାଏ, ତେଣୁ ତାକୁ ଯେତେ ଚେଷ୍ଟା କରାଯାଇପାରେ ଶିଶୁ–ସାହିତ୍ୟ ପତ୍ରିକାରୁ ବାଦ୍ ଦେବା କଥା ।

(୨) ହୁଙ୍କା ଓ ତତ୍‌ଜନିତ ଉପଲବ୍ଧି କାହାଣୀ, ଷ୍ଟୋରୀ ସମ୍ପର୍କିତ ପ୍ରବନ୍ଧ, ଗଳ୍ପ ଏହାର ଅନ୍ୟ ଏକ କଳୁଷିତ ଦିଗ । ତେଣୁ ଏହା ମଧ୍ୟ ଶିଶୁ–ସାହିତ୍ୟ ପତ୍ରିକାର କଳେବର ମଣ୍ଡନ ନ କରିବା ଉଚିତ ।

(୩) ନିର୍ଦ୍ଦିଷ୍ଟ ଜାତି ବା ଧର୍ମକୁ କେନ୍ଦ୍ରକରି ଗଢ଼ି ଉଠିଥିବା ଲେଖା ହିଂସାତ୍ମକ ଘଟଣା ଶିଶୁ ମନର ସାମ୍ପ୍ରଦାୟିକତା ସୃଷ୍ଟି କରେ ତେଣୁ, ତାହା ଶିଶୁ–ସାହିତ୍ୟ ପତ୍ରିକାର ସଂପୃକ୍ତ ନ ହେବା ଉଚିତ ।

(୪) ବସ୍ତୁବାଦୀ ଚିନ୍ତାଧାରା ପୂର୍ଣ୍ଣ ଗପ, ଅଣ–ବୈଜ୍ଞାନିକ ଲେଖା ଶିଶୁମନରେ ଆତ୍ମକେନ୍ଦ୍ରିକ ତଥା ଉଚ୍ଛୃଙ୍ଖଳ, ଅବିବେକିତା ଜାତ ହୋଇଥାଏ ତେଣୁ ଏହି ସବୁ ଉପାଦାନ ଶିଶୁ–ସାହିତ୍ୟ ପରିସରଭୁକ୍ତ ନ ହେବା ବାଞ୍ଛନୀୟ ।

(୫) ଗୁରୁଶିଷ୍ୟ ବା ବାପପୁଅ ସମ୍ପର୍କିତ ହସନା ଏବଂ ଶିଶୁ ପତ୍ରିକାରେ ବୟସ୍କଙ୍କ ପାଇଁ ଥିବା ବିଜ୍ଞାପନ ଯେତେଦୂର ସମ୍ଭବ ନ ରହିବା ଉଚିତ । ଏଗୁଡ଼ିକ ଶିଶୁ ମନସ୍ତତ୍ତ୍ୱ ପାଇଁ ଅନୁକୂଳ ନୁହେଁ । ତେଣୁ ଉପରୋକ୍ତ ବିଷୟ କେନ୍ଦ୍ରିକ ଲେଖା ଶିଶୁ ପତ୍ରିକାର କଳେବର ମଣ୍ଡନ ନ କରିବା ବାଞ୍ଛନୀୟ । ମୋଟାମୋଟି ଭାବରେ କହିବାକୁ ଗଲେ ଯେଉଁସବୁ ଉପାଦାନ ଶିଶୁର ମାନସିକ ସ୍ୱାସ୍ଥ୍ୟର ଅନ୍ତରାୟ ହେବ ସେ ସବୁ ଶିଶୁ ସାହିତ୍ୟରେ ପରିବେଷଣ ନ କରିବା ସମୀଚୀନ ହେବ । ଜଣେ ଆଲୋଚକଙ୍କ ଉକ୍ତିରେ, "ଆମ ଶିଶୁ–ସାହିତ୍ୟର ବଡ଼ ଦୁର୍ବଳତା ହେଉଛି ଶିଶୁ–ସାହିତ୍ୟ ସମ୍ପର୍କରେ ତାଲିମ ନ ପାଇ ସେ ଦିଗରେ ଲେଖନୀ ଚାଳନା କରିବା (ମହାନ୍ତି, ୧୯୯୦) ।୯। ଆଶାୟୀ ସଚେତନ ଶିଶୁ ସାହିତ୍ୟିକ ନିଜର ଲେଖାରେ ଏ ବିଷୟ ପ୍ରତି ଧ୍ୟାନ ଦେବା ସମୀଚୀନ ହେବ ।

## ଶିଶୁ–ସାହିତ୍ୟ ପତ୍ରିକାର ଗୁଣାତ୍ମକ ବିକାଶ ଉପରେ ଦି ପଦ

ବିଶିଷ୍ଟ ଶିକ୍ଷାବିତ୍ Arieti (1976) ଯେଉଁ ସମାଜ ବ୍ୟକ୍ତିର ସୃଜନଶୀଳତାକୁ ଉତ୍ସାହିତ କରି ତ୍ୱରାନ୍ୱିତ କରେ ତାକୁ ସୃଜନଶୀଳ ସମାଜ (creativogenic society)ର ଆଖ୍ୟା ଦେଇ ନଅଗୋଟି ସାମାଜିକ ଅବସ୍ଥାକୁ ଦର୍ଶାଇଛନ୍ତି ।୧୦। ସେଥିରୁ ମୁଖ୍ୟ କେତୋଟି ହେଲା–ପ୍ରଥମତଃ ଶିଶୁକୁ ବର୍ତ୍ତମାନ ସର୍ବସ୍ୱ ନ କରି ଭବିଷ୍ୟତଦର୍ଶୀ କରାଇବା । ଦ୍ୱିତୀୟତଃ ସମାଜରେ ବ୍ୟକ୍ତିକୁ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ନିଃସଙ୍କୋଚରେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ପ୍ରେରଣା ଦେବା । ତୃତୀୟତଃ ସାହାସୀକ ତଥା ସୃଜନଶୀଳ କୃତି ପାଇଁ ସମାଜ ଦ୍ୱାରା ଶିଶୁକୁ ପୁରସ୍କୃତ ତଥା ସମ୍ମାନିତ କରିବା । ଶିଶୁ–ସାହିତ୍ୟ ରଚନା ଏସବୁ ଉପରେ ପର୍ଯ୍ୟବେକ୍ଷିତ ହୋଇ ଶିଶୁ ପତ୍ରିକାର ଶୋଭା ବର୍ଦ୍ଧନ କରିବା ଉଚିତ । ଏହାଦ୍ୱାରା ଶିଶୁ ମାନସିକ ସୁସ୍ଥତା ଓ ମୁକ୍ତ ପରିବେଶ ପାଇ ପାରିବ ଏବଂ କିଛି ନୂତନତା ସୃଷ୍ଟି କରିବା ପାଇଁ ଅଭିପ୍ରେରିତ ହେବ । ଶିଶୁ ସାହିତ୍ୟର ସ୍ରଷ୍ଟାକୁ ନିଜର ବୟସ, ଦେଶ, କାଳ ଭୁଲି ନିଜେ ଶିଶୁ ମନ ନେଇ ସବୁକଥା ଚିନ୍ତା କରିବାକୁ ହିଁ ପଡ଼ିବ । ଶିଶୁମାନଙ୍କୁ ସାହିତ୍ୟ ମାଧ୍ୟମରେ ସିଧାସଳଖ ଉପଦେଶ ନ ଦେଇ ସେମାନେ କିପରି ତହିଁରୁ ଉପଦେଶ ଆହରଣ କରିବେ, ସେଥି ପାଇଁ ଛାଡ଼ିଦେବାକୁ ପଡ଼ିବ । ଶିଶୁ ସାହିତ୍ୟିକ ଶିଶୁର ମାନସିକ ଆବଶ୍ୟକତା ଓ ହାବଭାବ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇ ଶିଶୁମନ ସହିତ ପ୍ରତ୍ୟକ୍ଷ ଭାବରେ ପରିଚିତ ହେବା ଦରକାର ।

ପ୍ରଦର୍ଶିତ ସମସ୍ତ ଦୋଷ ଦୁର୍ବଳତାକୁ ଶିଶୁ-ସାହିତ୍ୟ ପତ୍ରିକାରୁ ବାଦ୍ ଦେଇ ଦେଲେ ନିମ୍ନଲିଖିତ କେତୋଟି ଦିଗ ପ୍ରତି ଦୃଷ୍ଟିଦେଇ ତାହାର ଗୁଣାତ୍ମକ ବିକାଶର ଆଶା କରାଯାଇ ପାରେ –

(କ) ଆମ ଦେଶ ତଥା ବିଦେଶର ବିଶିଷ୍ଟ ବ୍ୟକ୍ତିମାନଙ୍କର ଜୀବନୀକୁ ଶିଶୁ ଆଗରେ ଉପସ୍ଥାପିତ କରିବା ।

(ଖ) ଶିଶୁ-ପତ୍ରିକା ମାଧ୍ୟମରେ ଚିତ୍ରାଙ୍କନ କଳା ଶିକ୍ଷା ଦେବା ।

(ଗ) ସାହସିକତାର (Adventure) ଚିତ୍ର ପ୍ରଦର୍ଶନ କରିବା ଓ ତାକୁ ଚିହ୍ନିତ କରିବାକୁ ସୁଯୋଗ ଦେବା କିମ୍ବା ଚିତ୍ରକୁ ଭିତ୍ତିକରି ଗଳ୍ପରଚନା କରିବା ଓ ଶୀର୍ଷକ (ଏକାଧିକ) ପ୍ରଦାନ କରିବା ।

(ଘ) ଶିଶୁ-ସାହିତ୍ୟ ପତ୍ରିକାର ପ୍ରତିଟି ସଂଖ୍ୟାରେ କିଛିମାତ୍ରାରେ ବୁଦ୍ଧି ପରିମାପକ ତଥା ସୃଜନଶୀଳତା ପରିମାପକ ଉପରେ କିଛି ପ୍ରଶ୍ନ ଉପସ୍ଥାପନ କରିବା ।

(ଙ) ଛବି ସହ ଆଦର୍ଶ ଉପସ୍ଥାପିତ କରୁଥିବା ଗଳ୍ପ ଯୋଗାଇ ଦେବା ଏବଂ ତା'ର ଶୀର୍ଷକ ନିରୂପଣ କରିବାକୁ ଶିଶୁକୁ ପ୍ରେରଣା ଦେବା ।

(ଚ) ଆଧୁନିକ ସମସ୍ୟା ଉପରେ ଆଲୋକପାତ କରି ସରଳ ଭାଷାରେ ଲେଖା ଯୋଗାଇ ଦେବା ।

(ଛ) ଶିଶୁ-ସାହିତ୍ୟ ପତ୍ରିକାରେ ଶିଶୁକୁ ଆନନ୍ଦ ଦେବାଭଳି ନାଟକ, ଉପନ୍ୟାସ, ବ୍ୟଙ୍ଗଧର୍ମୀ ଲେଖା ପରିବେଷଣ କରିବା ।

(ଜ) ମା' ଓ ମାତୃଭୂମି ଉପରେ ଆଧାରିତ ସଙ୍ଗୀତ ଶିଶୁ-ସାହିତ୍ୟ ପତ୍ରିକାରେ ଅନ୍ତର୍ଭୁକ୍ତ କରିବା ।

(ଝ) ଆମ ଐତିହ୍ୟ ପରମ୍ପରା ଓ ସଂସ୍କୃତି ପ୍ରତି ଯେଉଁଭଳି ଶ୍ରଦ୍ଧା ଆସିବ ତାହା ଚିନ୍ତାକରି ସାହିତ୍ୟ ସୃଷ୍ଟି କରିବା ।

## ସରକାରଙ୍କ ପକ୍ଷରୁ ଶିଶୁ ସାହିତ୍ୟ ପାଇଁ ଉଦ୍‌ବେଗ :

(୧) ବିଭିନ୍ନ ଶିଶୁ ପୁସ୍ତକ ପତ୍ରିକାମାନ ଅଳ୍ପମୂଲ୍ୟରେ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟମାନଙ୍କୁ ଯୋଗାଇ ଦେବା ଓ ଏହି ବିଦ୍ୟାଳୟମାନଙ୍କରେ ପୁରସ୍କାର ବିତରଣୀ ସଭାରେ ପ୍ରତ୍ୟେକ ପୁରସ୍କାର ପାଇଁ ଏଭଳି ପୁସ୍ତକ ପିଲାମାନଙ୍କ ହାତରେ ଦେବା ।

(୨) ପ୍ରତ୍ୟେକ ଜିଲ୍ଲାରେ ସରକାରଙ୍କ ପକ୍ଷରୁ ଗୋଟିଏ ଲେଖାଏଁ ପାଠାଗାର ଗଠନ କରିବା ।

(୩) ବିଭିନ୍ନ ସ୍ଥାନରେ ସରକାରଙ୍କ ପକ୍ଷରୁ ଶିଶୁ ସାହିତ୍ୟର କର୍ମଶାଳା ମାନ ଅନୁଷ୍ଠାନ କରିବା ।

(୪) ଶିଶୁ ସାହିତ୍ୟ ଏକାଡେମୀକୁ ସ୍ୱୀକୃତି ଦେବା ।

### ଶେଷକଥା :

ବର୍ତ୍ତମାନ ଆମ ପାଖରେ ମିଳୁଥିବା ଶିଶୁ ସାହିତ୍ୟ ପତ୍ରିକାମାନ ଶିଶୁ ବ୍ୟକ୍ତିତ୍ୱର ଗୋଟିଏ ମୁଖ୍ୟ ଦିଗ ବ୍ୟତୀତ ଅନ୍ୟ ଦିଗଗୁଡ଼ିକୁ ସମନ୍ୱୟରେ ଅଳ୍ପ ବହୁତେ ବିକାଶିତ କରିବାରେ ତତ୍ପର ହୋଇଛନ୍ତି । ଯେଉଁ ଦିଗଟିର ଆଶାନୁରୂପ ଅଭିବୃଦ୍ଧି ହୋଇପାରି ନାହିଁ ତାହା ହେଉଛି ଶିଶୁର ମାନସିକ ବିକାଶ ଏବଂ ନିର୍ଦ୍ଦିଷ୍ଟ ଭାବରେ କହିବାକୁ ଗଲେ ଶିଶୁର ସୃଜନାତ୍ମକ ଅଭିବୃଦ୍ଧି । ଏଥିପାଇଁ ଶିଶୁ ସାହିତ୍ୟିକ ଏବଂ ଶିଶୁ ସାହିତ୍ୟ ପତ୍ରିକାର ସମ୍ପାଦକଙ୍କ ଶିଶୁ ସୃଜନଶୀଳତାର ଅଜ୍ଞତା ହିଁ ବିଶେଷ ଭାବରେ ଦାୟୀ । କାରଣ, ସେମାନେ ଶିଶୁ ମନସ୍ତତ୍ତ୍ୱ ଏବଂ ନିର୍ଦ୍ଦିଷ୍ଟ ଭାବରେ ସୃଜନଶୀଳତାର ମନସ୍ତତ୍ତ୍ୱ ବିଷୟରେ ତାଲିମ୍‌ପ୍ରାପ୍ତ ବା ଅଭିଜ୍ଞ ନୁହନ୍ତି । ଜଣେ ଶିକ୍ଷାବିତ୍ ଯଥାର୍ଥରେ କହିଛନ୍ତି, "ଯେଉଁ ଦେଶ ନିଜର ନାଗରିକମାନଙ୍କର ସୃଜନ-ଶୀଳତା ବା ସୃଷ୍ଟିଶୀଳତାକୁ ଉତ୍ସାହିତ ତଥା ତ୍ୱରାନ୍ୱିତ କରି ନ ପାରେ ସେ ଦେଶର ପ୍ରକୃତ ପ୍ରଗତି ଅସମ୍ଭବ । ଆମର ବହୁ ପରିଚିତ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ କହିଛନ୍ତି, "Imagination is more important than knowledge" କଳ୍ପନା ଜ୍ଞାନଠାରୁ ମହତ୍ତର । ପ୍ରତ୍ୟେକ ଶିଶୁ ପ୍ରକୃତିଗତ ରୂପେ ସୃଷ୍ଟିଶୀଳ ବା ସୃଜନଧର୍ମୀ । ପ୍ରତ୍ୟେକଙ୍କର ପାଖରେ କଳ୍ପନାର ସୌଧ ମହଜୁଦ୍ ଅଛି । ଅଭାବ ରହିଛି ଆମଠାରେ ତାକୁ ଏକ ଭିନ୍ନ ଦୃଷ୍ଟିରେ ଦେଖିବାରେ; ତାକୁ ପରମ୍ପରା ମୁକ୍ତ ସ୍ୱାଧୀନତା ଦେବାରେ, ତାଙ୍କର ଆଶା ଓ କଳ୍ପନାକୁ ଡେଭିଆନ୍ କରିବାରେ, ତାଙ୍କର ହାତରେ ସେମିତି ଶିଶୁ ସାହିତ୍ୟ (ପୁସ୍ତକ ବା ପତ୍ରିକା) ଦେବାରେ । ଆଜିକାର ପ୍ରତ୍ୟେକ ଶିଶୁ ସାହିତ୍ୟିକ, ଶିଶୁ ସାହିତ୍ୟାନୁରାଗୀ, ଆଶାୟୀ ଗୁରୁସମାଜ ତଥା ପିତା ମାତାଙ୍କ ପାଇଁ ସୃଜନଶୀଳତାକୁ ଶିଶୁ ସାହିତ୍ୟ ତଥା ପତ୍ରିକାରେ ସ୍ଥାନ ଦେଇ ଶିଶୁର ସୃଜନଶୀଳତାକୁ ବିକାଶ କରିବା ଏକ ସୁଯୋଗ ତଥା ଏକ ଆହ୍ୱାନ ।

N.B.-ଓଡ଼ିଶା ଶିଶୁ ସାହିତ୍ୟ ଗବେଷଣା ପରିଷଦର ଅଷ୍ଟମ ଶିଶୁ ସାହିତ୍ୟ କର୍ମଶାଳା (ନଭେମ୍ବର ୯ ରୁ ୧୧ ତା) ରେ ପଠିତ ଓ ଆଲୋଚିତ ।


(୧) ରମେଶ ପତ୍ରୀ, ଓଡ଼ିଶା ଶିଶୁ ସାହିତ୍ୟର ଜନ୍ମ ବିକାଶ, ହୀରାଖଣ୍ଡ, ୮-୪-୧୯୮୪, ପୃ-୪ ।

(ଡ଼. ମହେନ୍ଦ୍ର ମିଶ୍ରଙ୍କଠାରୁ ମିଳିଥିବା ସମୟୋପଯୋଗୀ ସାହାଯ୍ୟ ଓ ପ୍ରେରଣାକୁ ସ୍ୱୀକୃତି ଦେଇ ଧନ୍ୟବାଦ ଜଣାଉଛୁ) ।

(୨) ଡ଼. ଜଗନ୍ନାଥ ମହାନ୍ତି, ଓଡ଼ିଆ ଶିଶୁ ସାହିତ୍ୟର ବର୍ତ୍ତମାନ ଓ ଭବିଷ୍ୟତ, ପ୍ରଜାତନ୍ତ୍ର, ୧୩-୪-୧୯୮୯ (ଶୁକ୍ରବାର) ପୃ-୧୩

(୩) ଡ଼. କୁଞ୍ଜବିହାରୀ ଦାଶ, ଓଡ଼ିଆ ଲୋକଗୀତ ଓ କାହାଣୀ, ବିଶ୍ୱଭାରତୀ, ଶାନ୍ତିନିକେତନ, ୧୯୫୮ ।

(୪) Carl R. Rogers. Towards a theory of Creativity in C. R. Rogers (Ed.) on Becoming a person. Boston, Houghton Mittlin 1961.

(୫) E.Paul Torrance, Examples and Rationals of Test Takes for assessing Creative Abilities, Journal of Creative. Behaviour, vol. 2. No. 3, 1968. P.–169.

(୬) Warlach, M A and Kogan, N modes of Thinking in Young Children New York Holt Rinehart & Winston, Inc 1965

(୭) D C MaClelland et al motives in Fantasty, Action & Society

(୮) Ashok K Hota, Our Society & Child's Achievement Motivation (in press)

(୯) ଅଶୋକ କୁମାର ମହାନ୍ତି, ଓଡ଼ିଆ ଶିଶୁ ସାହିତ୍ୟର ଇତିହାସ ଓ ଧାରା ବିଚାର, ଗୋଲକଶିଳା, ଅଗଷ୍ଟ ୧୯୯୦ ପୃ-୨୦

(୧୦) S Arieti, Creativity : The Magic Synthesis, N Y C BAsic Books, 1976.



ଶିକ୍ଷା ବିଭାଗ,
ସିନାପାଲି ମହାବିଦ୍ୟାଳୟ,
କଳାହାଣ୍ଡି-୭୬୬୧୦୮ ।




ସୂଚନା ଭବନଠାରେ ମାନ୍ୟବର ରାଜ୍ୟପାଳ, ଶ୍ରୀ ଯଜ୍ଞଦତ୍ତ ଶର୍ମା, ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ, ଶ୍ରୀ ଶରତ କୁମାର କର ଓ ଶିଳ୍ପ ରାଷ୍ଟ୍ରମନ୍ତ୍ରୀ, ଶ୍ରୀ ଯାଦବ ମାଝୀ ଲକ୍ଷ୍ମଣ ନାୟକଙ୍କ ଉପରେ ଏକ ପ୍ରଦର୍ଶନୀକୁ ବୁଲି ଦେଖୁଛନ୍ତି ।

## ଶିକ୍ଷାର ପ୍ରସାର ପାଇଁ ଶିକ୍ଷାନୁଷ୍ଠାନଗୁଡ଼ିକୁ ସ୍ୱୀକୃତି ଦେବା କ୍ଷେତ୍ରରେ ଥିବା ପ୍ରତିବନ୍ଧକ ଦୂରୀକରଣ

ରାଜ୍ୟର ସ୍କୁଲଗୁଡ଼ିକୁ ସ୍ୱୀକୃତି ପ୍ରଦାନ କରିବା କ୍ଷେତ୍ରରେ ଥିବା ପ୍ରତିବନ୍ଧକ ଦୂର କରିବା ନିମନ୍ତେ ରାଜ୍ୟ ସରକାର ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ଗ୍ରହଣ କରିଛନ୍ତି । ବର୍ତ୍ତମାନ ସ୍ୱୀକୃତି ଅଭାବରୁ ରାଜ୍ୟର ପ୍ରାୟ ୩୦୦ ହାଇସ୍କୁଲର ଛାତ୍ରଛାତ୍ରୀମାନେ ପରୀକ୍ଷା ଦେଇପାରୁ ନାହାନ୍ତି । ସରକାରଙ୍କର ନିଷ୍ପତ୍ତି ଫଳରେ ଏହି ପ୍ରତିବନ୍ଧକ ଦୂରୀକରଣ କରାଯାଇ ପାରିବ ।

ବର୍ତ୍ତମାନ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଥିବା ହାଇସ୍କୁଲଗୁଡ଼ିକୁ ସ୍ୱୀକୃତି ଦେବାରେ ଥିବା ଅସାମଞ୍ଜସ୍ୟ ମଧ୍ୟ ବର୍ତ୍ତମାନ ଦୂର କରାଯାଇ ପାରିବ । ବର୍ତ୍ତମାନ ଉପକୂଳବର୍ତ୍ତୀ ଅଞ୍ଚଳର କେତେକ ପଞ୍ଚାୟତରେ ଲୋକ ସଂଖ୍ୟା ଭିତ୍ତିରେ ଦୁଇଟି ହାଇସ୍କୁଲକୁ ସ୍ୱୀକୃତି ଦିଆଯାଇଥିବା ବେଳେ ବହୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଅନେକ ପଞ୍ଚାୟତରେ ଗୋଟିଏ ମଧ୍ୟ ହାଇସ୍କୁଲ ସ୍ୱୀକୃତି ପାଇନାହିଁ । ଏହି ଅସମତା ଦୂର କରି ରାଜ୍ୟର ପ୍ରତି ପଞ୍ଚାୟତରେ ୨ଟି ହାଇସ୍କୁଲ ଓ ପ୍ରତି ବ୍ଲକ୍‌ରେ ୩ଟି +୨ କଲେଜ ଏବଂ ୨ଟି ଡିଗ୍ରୀ କଲେଜ ଖୋଲାଯିବା ନିମନ୍ତେ ଅନୁମତି ଦିଆଯିବ । ଯେଉଁ ପଞ୍ଚାୟତରେ ଗୋଟିଏ ହେଲେ ହାଇସ୍କୁଲ ନାହିଁ ସେଠାରେ ଉନ୍ନୀତ ମଧ୍ୟ ଇଂରାଜୀ ବିଦ୍ୟାଳୟକୁ ହାଇସ୍କୁଲରେ ପରିଣତ କରାଯିବ ।

ରାଜ୍ୟର ୨,୧୬୭ଟି ମଧ୍ୟ ଇଂରାଜୀ ବିଦ୍ୟାଳୟକୁ ନିକଟରେ ରାଜ୍ୟ ସରକାର ସ୍ୱୀକୃତି ପ୍ରଦାନ କରିଛନ୍ତି ।

# ଓଡ଼ିଆ ଭାଷାର ଉତ୍ପତ୍ତି ଓ ଓଡ଼ିଆ ଜାତି

ଡଃ ଦଣ୍ଡପାଣି ବେହେରା

ଭାରତର ପ୍ରାଚୀନ ଗ୍ରନ୍ଥମାନଙ୍କରେ ଓଡ୍ରଭାଷା ଅବା ଓଡ଼ିଆ ଭାଷାର ବିଶେଷ ଉଲ୍ଲେଖ ଅଛି । ପ୍ରାଚୀନ ଓଡ଼ିଶାର ବିଭିନ୍ନ ଭାଗ ଯଥା–ଓଡ୍ର, ଉତ୍କଳ, ତୋଷାଳୀ, କଙ୍ଗୋଦ, କଳିଙ୍ଗ ଓ କୋଶଳ ନାମରେ ପରିଚିତ ଥିଲେ ମଧ୍ୟ ସର୍ବତ୍ର ଓଡ୍ର ଭାଷାର ପ୍ରଚଳନ ଥିଲା । ଏହି ଭାଷାଭାଷୀ ସମଗ୍ର ଅଞ୍ଚଳକୁ ପ୍ରାଚୀନ କାଳରେ ଓଡ୍ର ଦେଶ ଭାବେ ଅଭିହିତ କରାଯାଇଥିଲା ।

ଭରତ ମୁନିଙ୍କର ନାଟ୍ୟଶାସ୍ତ୍ରରେ ଓଡ୍ର ଭାଷାକୁ ସଂସ୍କୃତର ଏକ ବିଭାଷା ଅବା ଅପଭ୍ରଂଶ ବୋଲି ଉଲ୍ଲେଖ କରାଯାଇଛି । ସଂସ୍କୃତ ଓ ଦେଶଜ ଭାଷାର ଏହା ଏକ ମିଶ୍ର ଭାଷା ବୋଲି ଭରତ ମୁନି ବର୍ଣ୍ଣନା କରିଛନ୍ତି । ଏହାକୁ ସଂସ୍କୃତର ସ୍ଥାନୀୟ ଏକ ଅପଭ୍ରଂଶ ବୋଲି କେହି କେହି ମତ ଦିଅନ୍ତି । ବ୍ରାହ୍ମଣ ମତବାଦର ଘୋର ପ୍ରତିବାଦ ଓ ପ୍ରତିରୋଧ ସତ୍ତ୍ୱେ ଓଡ୍ର ଦେଶରେ ଓଡ୍ର ଭାଷାର ପ୍ରତିପତି ଓ ପ୍ରଚଳନ ଅବ୍ୟାହତ ରହିଲା । ଏହା ଜନଗଣଙ୍କର ଭାଷାର ଆଦର ଲାଭ କଲା । ବାହାରୁ ଆସିଥିବା ଆର୍ଯ୍ୟ ଏବଂ ସ୍ଥାନୀୟ ଦ୍ରାବିଡ଼ ଅଧିବାସୀମାନଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନର ସଂଳାପର ମାଧ୍ୟମ ହେଲା ଏକ ଭାଷା ଖ୍ରୀଃ ପୂଃ ୩ୟ ଶତାବ୍ଦୀରେ ସମ୍ରାଟ ଅଶୋକ ପୁରୀର ଧଉଳି ଓ ଗଞ୍ଜାମର ଜଉଗଡ଼ଠାରେ ପ୍ରସ୍ତର ଗାତ୍ରରେ ପ୍ରାକୃତ ଭାଷାରେ ତାଙ୍କର ଅନୁଶାସନମାନ ଖୋଦନ କରାଇଲେ । ଏହି ପ୍ରାକୃତ ଭାଷା ଓ ଦେଶଜ ଓଡ୍ରଭାଷା ମଧ୍ୟରେ ଯଥେଷ୍ଟ ସାମଞ୍ଜସ୍ୟ ଥିଲା । ଖ୍ରୀଃ ପୂଃ ପ୍ରଥମ ଶତାବ୍ଦୀରେ ସମ୍ରାଟ ଖାରବେଳ ପାଲି ଭାଷାରେ ଭୁବନେଶ୍ୱର ଖଣ୍ଡଗିରିର ହାତୀ ଗୁମ୍ଫାରେ ତାଙ୍କର ଅନୁଶାସନ ଖୋଦନ କଲେ । ପାଲିଭାଷା ତତ୍କାଳୀନ କଳିଙ୍ଗର ଜାତୀୟ ଭାଷା ଥିଲା । ଏହି ଭାଷା ଓ ଓଡ୍ରଭାଷା ପରସ୍ପର ସମାନ ଓ ପରିପୂରକ ଜର୍ମାନ୍ ପଣ୍ଡିତ ଓଲଡେନ୍‌ବର୍ଗ ପାଲିଭାଷାକୁ କଳିଙ୍ଗର ଭାଷା ବୋଲି ମତ ଦେଇଛନ୍ତି । କଳିଙ୍ଗର ପାଲିଭାଷା ପରବର୍ତ୍ତୀ ସମୟରେ ସିଂହଳ ଶ୍ରୀଲଙ୍କାକୁ ପ୍ରେରିତ ହୋଇଥିଲା ବୋଲି ସେ ମତ ପୋଷଣ କରନ୍ତି ।

ଚିନ୍ ପରିବ୍ରାଜକ ହୁଏନ୍‌ସାଂ ଖ୍ରୀଃ ପୂଃ ୭ମ ଶତାବ୍ଦୀରେ ଓଡ୍ର ଦେଶ ପରିଭ୍ରମଣ କରି ଓଡ୍ର ଭାଷାକୁ ଏକ ସ୍ୱତନ୍ତ୍ର ଭାଷା ଭାବେ ତାଙ୍କର 'ସିୟୁକୀ' ଭ୍ରମଣ ବୃତ୍ତାନ୍ତରେ ବର୍ଣ୍ଣନା କରିଛନ୍ତି । ସେ ଉଲ୍ଲେଖ କରିଛନ୍ତି ଯେ– "ଓଡ୍ର ଦେଶର ଭାଷା ଓ ତା'ର ଶବ୍ଦାବଳୀ କେନ୍ଦ୍ର ଭାରତର କଥିତ ଭାଷାମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍" ଥିଲା ।

ଶୈଳୋଦ୍ଭବ ଓ ଭୌମକର ଶାସନ ସମୟରେ ସମସ୍ତ ଅନୁଶାସନ ସଂସ୍କୃତର ଅପଭ୍ରଂଶ ଓଡ୍ର ଭାଷାରେ ଲେଖାଯାଇଥିଲା । ଏହି ଅପଭ୍ରଂଶକୁ ଓଡ଼ିଆ ଭାଷାର ମୂଳଉତ୍ସ ବୋଲି କୁହାଯାଏ ।

ଓଡ୍ର ଭାଷା ଉପରେ ବୌଦ୍ଧ ଧର୍ମର ଗଭୀର ପ୍ରଭାବ ପଡ଼ିଥିଲା । ଓଡ଼ିଶାର କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ସାହିତ୍ୟ ଓ ସଂସ୍କୃତି ଉପରେ ମଧ୍ୟ ଏହି ଧର୍ମର ଯଥେଷ୍ଟ ପ୍ରଭାବ ପଡ଼ିଛି । ମୟୂରଭଞ୍ଜର ଖିଚିଙ୍ଗ, ବଉଦ ଓ ଚୌଦ୍ୱାର ଠାରେ ବହୁ ବୌଦ୍ଧ ସ୍ଥାପତ୍ୟ ଏ ଯାଏ ବିଦ୍ୟମାନ ।

ଭୌମରାଜା ଶୁଭଙ୍କର ଦେବ ଚତୁର୍ଥ ସ୍ୱହସ୍ତଲିଖିତ "ଗଣ୍ଡବ୍ୟୁହ" ନାମକ ପାଣ୍ଡୁଲିପି ବିଶିଷ୍ଟ ଏକ ବୌଦ୍ଧଗ୍ରନ୍ଥକୁ ଚୀନ ଦେଶର ସମ୍ରାଟଙ୍କ ନିକଟକୁ ନିଜର ଦୂତ ବିଶିଷ୍ଟ ବୌଦ୍ଧ ପଣ୍ଡିତ ପ୍ରଜ୍ଞାଙ୍କ ହସ୍ତରେ ପ୍ରେରଣ କରିଥିଲେ । ଏହି ଗ୍ରନ୍ଥକୁ ଚୀନ ସମ୍ରାଟଙ୍କ ଅବଗତି ନିମନ୍ତେ ପ୍ରଜ୍ଞା ଚୀନ ଉପରେ ଅନୁବାଦ କରିଥିଲେ ।

ଓଡ୍ର ଭାଷାରେ ଭକ୍ତି ଓ ଧର୍ମସାହିତ୍ୟ ରଚିତ ହେଲା, ଧର୍ମଯାଜକ, ପୂଜକ, ଭିକ୍ଷୁ ଓ ସନ୍ନ୍ୟାସୀମାନେ ଏହି ଭାଷାରେ ସେମାନଙ୍କର ଧର୍ମକାର୍ଯ୍ୟ ଓ ଧର୍ମବାଣୀ ପ୍ରଚାର କଲେ ।

କଳିଙ୍ଗର ଗଙ୍ଗରାଜା ଅନଙ୍ଗଭୀମ ଚୋଡ଼ଗଙ୍ଗ ଦେବ ସମସ୍ତ ଓଡ୍ର ଭାଷାଭାଷୀ ଅଞ୍ଚଳମାନଙ୍କୁ ଜୟକରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଓଡ୍ର ଦେଶ ଅବା ଓଡ଼ିଶାର ସୀମା ବିସ୍ତାର କରି ଓଡ଼ିଆ ଅଞ୍ଚଳମାନଙ୍କର ରାଜନୈତିକ ଏକତ୍ରିକରଣ ପ୍ରତିଷ୍ଠାକଲେ । କଳିଙ୍ଗ ନଗର (ମୁଖଲିଙ୍ଗମ୍) ବଦଳରେ ଅଭିନବ ବାରଣାସୀ କଟକ (କଟକକୁ) ରାଜଧାନୀ କରି ଓଡ଼ିଆମାନଙ୍କର ଜାତୀୟ ଆକାଂକ୍ଷାକୁ ସମ୍ମାନ କରି ସେ ଜଗନ୍ନାଥଙ୍କୁ ଓଡ଼ିଶାର ରାଷ୍ଟ୍ରଦେବତା, ଶ୍ରୀକ୍ଷେତ୍ର ପୁରୀରେ ତାଙ୍କରି ନିମନ୍ତେ ନିର୍ମିତ ମନ୍ଦିରକୁ ଶ୍ରୀ ମନ୍ଦିର ଏବଂ ପ୍ରଚଳିତ ଓଡ୍ର ଭାଷାକୁ ରାଜକୀୟ ଭାଷା ରୂପେ ଘୋଷଣା କରି

ଓଡ଼ିଆମାନଙ୍କୁ ଏକ ନୂତନ ଜାତୀୟ ଚେତନା ଓ ସାଂସ୍କୃତିକ ଜୀବନରେ ଭରିଦେଲେ । ତାଙ୍କ ସମୟରେ ହିଁ ସର୍ବ ପ୍ରଥମ ଓଡ଼ିଆ ଶବ୍ଦ ଭୁବନେଶ୍ୱରର ମନ୍ଦିର ଗାତ୍ରରେ ଖୋଦିତ ହେଲା ଏବଂ ପ୍ରଶାସନିକ ନଥିପତ୍ର ଓ ଅନୁଶାସନାଦି ଓଡ଼ିଆ ଭାଷାରେ ଲିପିବଦ୍ଧ ହେବାର ପ୍ରକ୍ରିୟା ଆରମ୍ଭହେଲା । ଏହିଭଳି ଜଗନ୍ନାଥ ଧର୍ମ ଧାରଣା ଓ ଓଡ଼ିଆ ଜାତୀୟ ଚେତନାର ଦ୍ୟୋତକ ଭାବେ ଓ ଓଡ଼ିଆ ଭାଷା ଓ ସାହିତ୍ୟ ତତ୍‌ପରତାରୁ କ୍ରମବିକାଶର ପଥରେ ଅଗ୍ରସର କରି ପରିଶେଷରେ ୧୯୩୬, ଏପ୍ରିଲ୍ ୧ ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଚୂଡ଼ାନ୍ତ ଭାବେ ପ୍ରତିଫଳିତ ହେଲା । ଏଣୁ ଓଡ଼ିଆ ଭାଷା ଓ ସାହିତ୍ୟକୁ ଓଡ଼ିଆ ଜାତି ଓ ଓଡ଼ିଶାର ଆସ ଜୀବନୀ ବୋଲି ଯଥାର୍ଥରେ କୁହାଯାଏ ।

ଅଧ୍ୟକ୍ଷ,
ଖେମୁଣ୍ଡି ମହାବିଦ୍ୟାଳୟ,
ଦିଗପହଣ୍ଡି, (ଗଞ୍ଜାମ) ।




ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ସୂଚନା ଭବନଠାରେ ଅନୁଷ୍ଠିତ ଏକ ଶିଶୁ ଚଳଚ୍ଚିତ୍ର ଉତ୍ସବକୁ ଉଦ୍‌ଘାଟନ କରୁଛନ୍ତି (୧୪/୧୧) ।

# ମାଣବସା ଗୁରୁବାର

ପୂର୍ଣ୍ଣଚନ୍ଦ୍ର ଶୁରଦେଓ

ମାର୍ଗଶିର ଗୁରୁବାରମାନଙ୍କରେ ନୂଆ ଧାନରେ ମାଣକୁ ଭର୍ତ୍ତି କରି ଲକ୍ଷ୍ମୀ ରୂପରେ ଘରେ ଘରେ ପୂଜା କରାଯାଏ । ଏହି ପୂଜାର ନାମ ମାର୍ଗଶିର 'ମାଣବସା ଗୁରୁବାର' । ଓଡ଼ିଆ ଗୃହିଣୀ ଅତି ନିଷ୍ଠାରେ ଏହି ପୂଜା ପାଳନ କରି ଥାଏ । ଜୀବ ଜଗତର ପାଳିକା ମହା ଲକ୍ଷ୍ମୀଙ୍କୁ ଧାନ୍ୟ ରୂପେ ପୂଜା କରିବା ଆଦୌ କଳ୍ପନା ନୁହେଁ । ଶସ୍ୟ ରୂପିଣୀ ମହାଲକ୍ଷ୍ମୀଙ୍କର ଏପରି ପୂଜା ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ବାସ୍ତବ । ଦେବୀଙ୍କ ଶସ୍ୟ ରୂପରେ ପୂଜା କରିବା ପରମ୍ପରା କେଉଁ ଅବିସ୍ମରଣୀୟ ପ୍ରାଚୀନ କାଳରୁ ପ୍ରବାହମାନ ।

ସଭ୍ୟତା ଓ ସଂସ୍କୃତିର ଆଦ୍ୟ ସ୍ଫୁରଣ କାଳରେ ସର୍ବ ପ୍ରଥମେ ମାତୃକା ଦେବୀଙ୍କୁ ପୂଜା କରା ଯାଉ ଥିଲା ଏବଂ ଏହି ପୂଜା ମୁଖ୍ୟ ବିବେଚିତ ହେଉ ଥିଲା । ସମନ୍ୱିତ ପୂଜା ରୂପେ 'ଲିଙ୍ଗ ପୂଜା' ଅବଶ୍ୟ ପାଳିତ ହେଉ ଥିଲା । ପ୍ରାକ୍ ବୈଦିକ ଦ୍ରାବିଡ଼ ସଭ୍ୟତାରେ ପଶୁପତି ଶିବ ବା ଲିଙ୍ଗ ମୂର୍ତ୍ତି ହରପ୍ପା ଓ ମହେଞ୍ଜୋଦାରୋ ଖୋଦନରୁ ମିଳିବା ଏହାର ପ୍ରମାଣ ।

ଆଦିମ ସଭ୍ୟତାରେ ଲୋକେ ବନବାସୀ ଭାବେ ଜୀବନ ଯାପନ କରୁ ଥିଲେ ଏବଂ ସେମାନଙ୍କ ସମାଜ ମାତୃ ପ୍ରଧାନ ଥିଲା । ତେଣୁ ସେମାନଙ୍କ ମାତୃକା ଦେବୀ ଅରଣ୍ୟ ଜାତ ଶସ୍ୟର ପ୍ରତୀକ ଥିଲେ । ଏହି ସଭ୍ୟତାର ଉତ୍ତରତା ତଥା ପରବର୍ତ୍ତୀ ଆର୍ଯ୍ୟ ସଭ୍ୟତା ସହ ସମନ୍ୱୟ ସ୍ଥାପନ ହେଲେ ମଧ୍ୟ ସେ ସେହି ପରି ଅରଣ୍ୟ ଶସ୍ୟ ପ୍ରତୀକ ହୋଇ ରହିଲେ । ମାତୃକା ଦେବୀ ସୁପରିକଳ୍ପିତା ହେଲେ । ତାଙ୍କ ନବ ପତ୍ରିକା ସ୍ୱରୂପ ହେଲା ।

ଏହି ପରିପ୍ରେକ୍ଷୀରେ ଆଦ୍ୟାଶକ୍ତି ଦୁର୍ଗାଙ୍କର ଶାରଦୀୟା ପୂଜାରେ ବିଲ୍ୱବରଣ ମଧ୍ୟ ହୋଇ ଥାଏ ।

ଏହି ଆଦ୍ୟାଶକ୍ତି ସୃଷ୍ଟିର ସୃଷ୍ଟି ସ୍ଥିତି ଓ ଲୟ ଅର୍ଥାତ୍ ସୃଜନ, ପାଳନ ଓ ଶାସନର ତ୍ରିଶକ୍ତି ରୂପେ ପ୍ରକଟିତ ହେଲେ । ଏହି ତ୍ରିଶକ୍ତି ମହା ସରସ୍ୱତୀ, ମହାଲକ୍ଷ୍ମୀ ଓ ମହାକାଳୀ ଅଟନ୍ତି — ଆଦ୍ୟାଶକ୍ତି ମୁଖ୍ୟତଃ ମହାକାଳୀ ରୂପେ ବିରାଜିତା ହୋଇ ଶାସନ ଓ ଧ୍ୱଂସର ଦେବତା ମହେଶଙ୍କର ଶକ୍ତି ହେଲେ । ମହାଲକ୍ଷ୍ମୀ ଓ ମହାସରସ୍ୱତୀଙ୍କୁ ବିଷ୍ଣୁ ଏବଂ ବ୍ରହ୍ମାଙ୍କ ଶକ୍ତିରେ ପରିଣତ କଲେ । ମାତ୍ର ବସ୍ତୁତଃ ଏହି ତ୍ରିଦେବୀ ଓ ତ୍ରିଦେବ ଏକ ଓ ଅଭିନ୍ନ ।

ଅରଣ୍ୟ ସଭ୍ୟତାର ଉତ୍ତରଣରେ କୃଷି — ସଭ୍ୟତାର ଉଦ୍ଭବ ଘଟିବାରୁ ଲୋକେ କେବଳ ଅରଣ୍ୟ — ଉଦ୍ଭିଦଭୋଜୀ ନରହି ଉନ୍ନତ ଶସ୍ୟଭୋଜୀ ହେଲେ । ସେମାନେ କୃଷି ଦ୍ୱାରା ଧାନ୍ୟାଦି ଶସ୍ୟ ଉତ୍ପାଦନ କରିବା ଫଳରେ ଉନ୍ନତ ଜୀବନ ଯାପନ ସ୍ତର ସୃଷ୍ଟି ହେଲା । ମାତୃକା ଦେବୀ ନବ ପତ୍ରିକା ନହୋଇ ଧାନ୍ୟ ମାଣିକା ହେଲେ । ଯଥାର୍ଥରେ ସେ କୃଷିଜାତ ଶସ୍ୟମାନଙ୍କ ମଧ୍ୟରେ ପ୍ରମୁଖ ଶସ୍ୟ ଧାନ୍ୟର ପ୍ରତୀକତା ଗ୍ରହଣ କଲେ ।

କୃଷି ସଭ୍ୟତା ପ୍ରଧାନ ସମାଜରେ ମହାଲକ୍ଷ୍ମୀ — ସୁଦୃଢ଼ ଆସନ ପାତି ବସିଲେ । ପରବର୍ତ୍ତୀ କାଳରେ ସେ, ନାନା ସଦ୍‌ଗୁଣ ଓ ଶ୍ରୀଦାସ୍ୟରର ମଧ୍ୟ ପ୍ରତୀକ । ଉତ୍ତମ ଗୁଣର ବ୍ୟକ୍ତିଙ୍କୁ କୁହା ଗଲା ଲକ୍ଷ୍ମୀବନ୍ତ । ଉତ୍ତମ ଗୁଣାସ୍ତର ହୀନ ବ୍ୟକ୍ତିଙ୍କୁ ଲକ୍ଷ୍ମୀଚ୍ୟୁତ ବା ଲକ୍ଷ୍ମୀଛଡା ଭାବେ ନାମିତ ହେଲେ ।

ବୈଦିକ ସଭ୍ୟତା ଓ ସମାଜ ପୁରୁଷ ପ୍ରଧାନ ହେଲେ ମଧ୍ୟ ମାତୃକା ଦେବୀ ଆଦୌ ନ୍ୟୂନା ବିବେଚିତ ହେଲେ ନାହିଁ । 'ସାରଜନ୍ ଉଡ୍‌ରଫ' ତାଙ୍କ ଲିଖିତ Sakti and Sakta ପୁସ୍ତକରେ ଲେଖିଛନ୍ତି– But in the religious history of India, Mother Goddess never ceased in Indian mind ever in the Sectarian religious like– Vaisnavism, Saivisme, etc., the femals principle had to be given a prominent position. Even the basically atherstic religious like Buddhism and Jainism could not avoid this popular influence. Lates Buddhism is infait nothing but disguised Tentric cult of the female principle.

ନଦୀ ଉପତ୍ୟକା ସଭ୍ୟତା ମୁଖ୍ୟତଃ କୃଷି ସଭ୍ୟତା । ଏହାଥିଲା ଆର୍ଯ୍ୟ ସଭ୍ୟତା । ଏହି ସଭ୍ୟତା ଉନ୍ମେଷ ଶୈଶବ ଓ

ସିନ୍ଧୁ ଉପତ୍ୟକାରେ ବିପୁଳ ଭାବରେ ବିକାଶ ଲାଭ କରିଥିଲା । ସରସ୍ୱତୀ କୂଳରେ ଆର୍ଯ୍ୟ ଋଷିମାନେ ବେଦ ରଚନା କରିଥିଲେ । ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ରୂପେ ସରସ୍ୱତୀ ପ୍ରତିଷ୍ଠିତା ହୋଇ ଥିଲେ । ସରସ୍ୱତୀ ନଦୀର ସମସ୍ତ ପ୍ରତୀକତା ଏହାଙ୍କଠାରେ ନିହିତ ଥିଲା । ସେ ସରସ୍ୱତୀ ନଦୀର ସ୍ୱଚ୍ଛ ପ୍ରବାହ ପରି – ଗୌର ବର୍ଣ୍ଣା/ସରସ୍ୱତୀ ଜଳଜାତ ପଦ୍ମ ତାଙ୍କର ଆସନ, ଓ ଜଳଚାରୀ ହଂସ ତାଙ୍କର ବାହନ ଓ କଚ୍ଛପାକୃତି ତାଙ୍କର ବୀଣା କଚ୍ଛପୀ ନାମ ଯୁକ୍ତା । ଏହି ଯୁଗରେ ଅନ୍ୟ ତମ ଦେବୀ ଲକ୍ଷ୍ମୀ ସମୁଦ୍ରରୁ ସମ୍ଭବା ହୋଇ ଥିଲେ । ସଭ୍ୟତାର ବିକାଶ କ୍ରମେ ସମ୍ପଦ ଓ ଶ୍ରୀଲକ୍ଷ୍ମୀ ରୂପେ ବିବେଚିତ ହେଲେ । ଏକ ପୌରାଣିକ ଆଖ୍ୟାନ ହେଉଛି ଆଦ୍ୟାଶକ୍ତି ମାତୃକା ଦେବୀ ବା ପାର୍ବତୀ ପଶୁପତି ଶିବଙ୍କର ଶକ୍ତି ରୂପେ ଗୃହିତା ହେଲେ । ବିଷ୍ଣୁଙ୍କ ଶକ୍ତି ରୂପେ ଏକ ଦେବୀ ମୂର୍ତ୍ତି ବ୍ରହ୍ମା ନିର୍ମାଣ କଲେ । ମାତ୍ର ସେ ରୂପରେ ମାତୃକା ଦେବୀଙ୍କ ସମକକ୍ଷ ହୋଇ ପାରିଲେ ନାହିଁ ବୋଲି ସେ ଉକ୍ତ ମୂର୍ତ୍ତିକୁ ସମୁଦ୍ରରେ ବିସର୍ଜନ ଦେଇ ଥିଲେ । ଦେବତା ଓ ଋଷିମାନେ ମିଳିତ ଉଦ୍ୟମରେ ସମୁଦ୍ର ମନ୍ଥନ କଲାବେଳେ– ଐରାବତ, ଚନ୍ଦ୍ର, ଅମୃତ ଆଦି ସହ ଲକ୍ଷ୍ମୀ ଆବିର୍ଭୂତା ହୋଇଥିଲେ ଏବଂ ବିଷ୍ଣୁଙ୍କ ଶକ୍ତି ରୂପେ ଗୃହିତା ହୋଇଥିଲେ ।

ଏହି ଆଖ୍ୟାନରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଅରଣ୍ୟ ସଭ୍ୟତାର ନବ ପତ୍ରିକା ମାତୃକା ଦେବୀ କୃଷି ସଭ୍ୟତାରେ ଶସ୍ୟ ବା ସମ୍ପଦ ରୂପିଣୀ ଲକ୍ଷ୍ମୀ ହେଲେ । ଲକ୍ଷ୍ମୀ ମାତୃକା ଦେବୀଙ୍କ ପରବର୍ତ୍ତୀ ଉତ୍ତରଣ ଏଥିରେ ସନ୍ଦେହ ନାହିଁ । ପୁନଶ୍ଚ ରାକ୍ଷସ ବା ଦ୍ରାବିଡ଼ ଜାତି ସାମୁଦ୍ରିକ ବାଣିଜ୍ୟରେ ଧୁରନ୍ଧର ଥିଲେ ଏବଂ ସେମାନଙ୍କୁ ଅନୁକରଣ କରି ଆର୍ଯ୍ୟମାନେ ଏହି ବାଣିଜ୍ୟରେ ପ୍ରବୃତ୍ତ ହୋଇଥିଲେ । ଉକ୍ତ ବାଣିଜ୍ୟ କ୍ଷେତ୍ରରେ ଆର୍ଯ୍ୟ ଓ ଦ୍ରାବିଡଙ୍କ ପ୍ରତିଯୋଗିତା ହିଁ ସମୁଦ୍ର ମନ୍ଥନ ଆଖ୍ୟାନ ରୂପେ ବର୍ଣ୍ଣିତ ହୋଇଛି । କୃଷି ସଭ୍ୟତାର ଶସ୍ୟ ରୂପିଣୀ ଲକ୍ଷ୍ମୀ ପରବର୍ତ୍ତୀ ବାଣିଜ୍ୟ ବିକାଶ କାଳରେ ଧନର ପ୍ରତୀକା ହେଲେ । ପରବର୍ତ୍ତୀ କାଳରେ ସମସ୍ତ ଶୁଚି ଓ ସଦ୍‌ଗୁଣର ପ୍ରତୀକ ଭାବରେ ସର୍ବଜନ ବନ୍ଦିତା ଦେବୀ ପ୍ରତିଷ୍ଠିତା ହେଲେ ।

ମାତ୍ର ମହାନ ଆର୍ଯ୍ୟ ଧର୍ମରେ ମହାକାଳୀ, ମହା ସରସ୍ୱତୀ, ମହା ଲକ୍ଷ୍ମୀ ଅଭିନ୍ନ ଓ ଏକ ଆଦ୍ୟାଶକ୍ତି । ଏକଦା ପାର୍ବତୀଙ୍କ ନିକଟରେ ଲକ୍ଷ୍ମୀ ନିଜିରି ସ୍ୱରୂପ ମହିମା ବର୍ଣ୍ଣନା କରି କହିଥିଲେ, ମୁଁ ଭଗବାନ ବିଷ୍ଣୁଙ୍କ ପରାଶକ୍ତି । ବେଦବେତ୍ତା ମୋତେ ମୂଳ ପ୍ରକୃତି କହନ୍ତି । ଭଗବାନ – ବିଷ୍ଣୁଙ୍କ ସାନ୍ନିଧ୍ୟରେ ଥାଇ ମୁଁ ଜଗତର ସୃଷ୍ଟି ସ୍ଥିତି ସଂହାର ବା ଶାସନ ବ୍ୟବସ୍ଥା କରୁଛି । ମୋ ଶକ୍ତିର ପ୍ରଭାବରେ ବିଷ୍ଣୁ ଅଦ୍ଭୁତ ଲୀଳାର ଅଧିକାରୀ । ବିଷ୍ଣୁଙ୍କ ଆଜ୍ଞାରେ ମୁଁ ଜୀବଜଗତର ପାଳନ କରିଥାଏଁ ।

ଏହି ମହାଶକ୍ତିସମ୍ପନ୍ନା କଲ୍ୟାଣମୟୀ ମାତୃ ଦେବୀଙ୍କୁ ଆମେ ନିଷ୍ଠାର ସହ ପୂଜା କରୁ । କ୍ଷୀର ସମୁଦ୍ରରୁ ଆଶ୍ୱିନ ପୂର୍ଣ୍ଣିମାରେ ଗଜ ପାରିଜାତ ଆଦି ସହ ଜନ୍ମ ଲାଭ କରିଥିବାରୁ ଉକ୍ତ ପୂର୍ଣ୍ଣିମାରେ ସେ ଗଜଲକ୍ଷ୍ମୀ ରୂପେ ପୂଜିତା ହୁଅନ୍ତି ।

ଶସ୍ୟ ସମ୍ପଦ ସଦାଶ୍ରୀର ରୂପିଣୀ ଲକ୍ଷ୍ମୀଙ୍କର ପୂଜା କଳିଯୁଗରେ ଏକାନ୍ତ ସାର୍ବଜନିନ । ମୁଖ୍ୟତଃ ସେ ଶସ୍ୟ ଦେବୀ ରୂପେ ଆରାଧିତା, ଶସ୍ୟ ଉତ୍ପାଦନ ମାସ ମାର୍ଗଶିର ପ୍ରତି ଗୁରୁବାରରେ ତାଙ୍କର ପୂଜା ହୋଇ ଥାଏ । ଓଡ଼ିଆ ଗୃହିଣୀମାନେ, ମହା ଲକ୍ଷ୍ମୀଙ୍କୁ ଧାନମାଣରେ ଆବିର୍ଭୂତା କରନ୍ତି ।

ହରିଜନ ମହିଳା ଶିରିଆ ଚଣ୍ଡାଲୁଣୀର ଭକ୍ତି ପୂର୍ଣ୍ଣ ଅର୍ଘ୍ୟ ପୂଜା ଓ ସେବାରେ ସନ୍ତୁଷ୍ଟ ହୋଇ, ତା କୁଟୀରର ଦ୍ୱାର–ଦେଶରେ ଏହି ମହାଲକ୍ଷ୍ମୀ ଉପସ୍ଥିତ ହୋଇ ତାଙ୍କୁ ସହସ୍ର ବର ପ୍ରଦାନ କରିଥିବା ପ୍ରମାଣ ବହୁ ପୁସ୍ତକରେ ଉଲ୍ଲେଖ ଅଛି ।

ଗୁରୁ ଶିକ୍ଷ ଭବନ,
ଓଲ୍ଡ୍ ଟାଉନ, ନୟାଗଡ଼ ।



ଆର୍ଟିଷ୍ଟ ଶ୍ରୀ ଦେବରାଜ ସାହୁ, ମାନ୍ୟବର ରାଜ୍ୟପାଳ, ଶ୍ରୀ ଯଜ୍ଞଦତ୍ତ ଶର୍ମାଙ୍କୁ ଏକ ଟେରାକୋଟା ଆର୍ଟ ପ୍ରଦାନ କରୁଛନ୍ତି (୨୭/୧୧) ।

# "ପଞ୍ଚ ସଖାଙ୍କ ସହଜାନନ୍ଦ – ଶ୍ରୀଜଗନ୍ନାଥ"

ଡକ୍ଟର ଶିରୀଷଚନ୍ଦ୍ର ଭୋଳ

ମହାକବି ସାରଳା ଦାସଙ୍କ ପରେ ଓଡ଼ିଶାରେ ଯେଉଁ ପଞ୍ଚସଖା ଯୁଗର ଅଭ୍ୟୁଦୟ ହୋଇଥିଲା, ତାହା ଓଡ଼ିଆ ସାହିତ୍ୟର ବିକାଶ ଯୁଗ ନାମରେ ନାମିତ । ପଞ୍ଚସଖା ଯୁଗର ମହାପୁରୁଷମାନଙ୍କ ମଧ୍ୟରେ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତ ଥିଲେ ପ୍ରସିଦ୍ଧ ପଞ୍ଚ ମହାପୁରୁଷ । ଏହି ପଞ୍ଚ ମହାପୁରୁଷ ନିଜ ନିଜର ରଚନା ମାଧ୍ୟମରେ ସମାଜ ଜୀବନରେ ବୈପ୍ଳବିକ ଚିନ୍ତାଧାରାର ସୂତ୍ରପାତ କରି, ଜାତୀୟ ଚେତନାକୁ ଉଜ୍ଜୀବିତ କରିଥିଲେ ।୧। ସେତେବେଳେ ଚୈତନ୍ୟ ଦେବଙ୍କର ରାଧାକୃଷ୍ଣ ଲୀଳାର ପ୍ରଚାର ତଥା ନାମ ସଂକୀର୍ତ୍ତନ ସାଧାରଣ ପଲ୍ଲୀ ଜୀବନରେ ଭଗବତ୍ ପ୍ରେମ ସୃଷ୍ଟି କରୁଥିବାବେଳେ, ପଞ୍ଚସଖାଙ୍କ ରଚିତ ବିଭିନ୍ନ ଗ୍ରନ୍ଥର ସରଳ ସହଜ ଭାବଧାରା, ତତ୍କାଳୀନ ସମାଜର ଦୃଷ୍ଟିକୋଣକୁ ବହୁ ପରିମାଣରେ ମାର୍ଜିତ କରି ପାରିଥିଲା ।୨। ଏହା ସହିତ, ଏହି ପଞ୍ଚସଖା ଓଡ଼ିଶାର ଧର୍ମ–ଭାବନାରେ ମଧ୍ୟ ଏକ ଅଭୂତପୂର୍ବ ଧର୍ମାନ୍ଦୋଳନ ସୃଷ୍ଟି କରିଥିଲେ ।୩।

ପଞ୍ଚସଖା ଧର୍ମର ବିଭିନ୍ନ ଉପଧାରାମାନ ଏକ ଧର୍ମଧାରାରୁ ସୃଷ୍ଟି । ସମସ୍ତ ସଖା ଜ୍ଞାନମିଶ୍ରା ଭକ୍ତିମାର୍ଗର ସାଧକ ଥିଲେ ଏବଂ ଉପାସକ ଥିଲେ । ଏମାନଙ୍କ ସାଧନାର ଅନ୍ତଃସତ୍ତାରେ ଅଭିନ୍ନତା ଥିବାର ଦେଖା ଯାଏ । ଏମାନଙ୍କର ଅଜଣା ଅଜପା, ଅଣାକାର, ଶୂନ୍ୟ, ଏକାକ୍ଷର ଓ ଅବନା ଇତ୍ୟାଦି ମନ୍ତ୍ର ଶୂନ୍ୟର ଏକ ଏକ ପରିଭାଷା ବ୍ୟତୀତ ଅନ୍ୟ କିଛି ନୁହେଁ । ତେଣୁ ଏମାନଙ୍କ ଗୁହ୍ୟ ମନ୍ତ୍ର ଯେ ଶୂନ୍ୟ ବ୍ୟଞ୍ଜକ ଥିଲା, ଏଥିରେ ସନ୍ଦେହ ନାହିଁ । ସେହିପରି ପଞ୍ଚସଖାଙ୍କ ସାଧନାର ଅନ୍ତିମ ଲକ୍ଷ୍ୟ ମଧ୍ୟ ଥିଲା ଏକ ଓ ଅଭିନ୍ନ ।୪। ଅଣାକାର ମଧ୍ୟରେ ସାକାର ରୂପୀ ଶ୍ରୀଜଗନ୍ନାଥଙ୍କୁ ପ୍ରତିପାଦିତ କରିବାକୁ ପଞ୍ଚସଖା ଧର୍ମର ଅନ୍ୟତମ ଆଧାରିକ ବୈଶିଷ୍ଟ୍ୟ ରୂପେ ଗ୍ରହଣ କରାଯାଏ ।୫। ପୁଣି ସେମାନଙ୍କର ଲେଖାରେ ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ଦିଅଁ ବୋଲି ନ କହି, ସମଗ୍ର ଜଗତର ନାଥ ଓ ପରମବ୍ରହ୍ମ ରୂପରେ ମଧ୍ୟ ଗ୍ରହଣ କରାଯାଇଛି ।୬।

## ପିଣ୍ଡରେ ବ୍ରହ୍ମାଣ୍ଡ :

କାୟା ସାଧନା ଭାରତର ବହୁ ପ୍ରାଚୀନ ସାଧନା । ପତଞ୍ଜଳିଙ୍କ ଅନୁସାରେ ଯୋଗାବସ୍ଥାରେ ପହଞ୍ଚିବାକୁ ହେଲେ, ପ୍ରାଣାୟମର ଆବଶ୍ୟକ ହୋଇଥାଏ । ପଞ୍ଚସଖାଙ୍କ ବେଳକୁ ଏହି ସାଧନା କ୍ରମଶଃ ଲୁପ୍ତହୋଇ ଆସୁଥିଲା । ଏଣୁ ସେମାନେ ଯୋଗସାଧନା ଦ୍ୱାରା ଷଟ୍‌ଚକ୍ର ଭେଦ ପୂର୍ବକ ପରଂବ୍ରହ୍ମଙ୍କୁ ଲାଭ କରିବାର ସେହି ସୁଦୃଢ଼ ଆଦର୍ଶ ମାର୍ଗକୁ ପୁନଃ ପ୍ରବର୍ତ୍ତନ କରିଛନ୍ତି ।୭। ଯୋଗୀ ଅରବିନ୍ଦଙ୍କ ମତରେ, ଭଗବାନଙ୍କ ସହିତ ମିଳନ ହିଁ ଯୋଗ । ଏହି ମିଳନକୁ ବିଶ୍ୱାତୀତ, ବିଶ୍ୱଗତ ବା ବ୍ୟଷ୍ଟିଗତ ମିଳନ ବୋଲି ମଧ୍ୟ କୁହା ଯାଏ ।୮। ଏହି ପରମାତ୍ମାଙ୍କୁ ସାକ୍ଷାତ୍ କରିବା ପାଇଁ ଶୁଦ୍ଧ ଅନ୍ତଃକରଣରେ ଯୋଗାଭ୍ୟାସ କରିବାକୁ ହୋଇଥାଏ ।୯। ଏହି ପରମାତ୍ମା ଶରୀର ମଧ୍ୟରେ ଅଛନ୍ତି । ପୁଣି, ବ୍ରହ୍ମାଣ୍ଡରେ ମଧ୍ୟ ପରିବ୍ୟାପ୍ତ ହୋଇ ରହିଛନ୍ତି । ତେଣୁ ପଞ୍ଚସଖାଗଣ ସେହି ପରମାତ୍ମାଙ୍କୁ ଦର୍ଶନ କରିବା ସକାଶେ କାୟା ସାଧନାକୁ ସେମାନଙ୍କର ମୁଖ୍ୟ ସାଧନ ପନ୍ଥା ରୂପେ ଗ୍ରହଣ କରିଥିଲେ ।୧୦।

ଗବେଷକ ଚିତ୍ତରଞ୍ଜନ ଦାସଙ୍କ ମତରେ ଏହି କାୟା ଯୋଗର ମୂଳତତ୍ତ୍ୱ ହେଉଛି, କାୟାକୁ ପବିତ୍ର ରଖି, ସାଧନାର ଯୋଗ୍ୟ ଭୂମିରେ ପରିଣତ କରିବା । ଏହା ହୋଇପାରିଲେ, ଉପଲବ୍ଧି କରିବାର ବା ପରଂବ୍ରହ୍ମଙ୍କୁ ନିଜର ଉପଲବ୍ଧିରେ ପାଇବାର ପନ୍ଥା ପରିଷ୍କାର ହୋଇଯାଏ ।୧୧। ସେଥିପାଇଁ ଶରୀରକୁ ଅର୍ଥାତ୍ ମାନବ ଦେହକୁ ଦେବ ମନ୍ଦିର ରୂପେ ଗ୍ରହଣ କରାଯାଇ, ଏଥିରେ ଦେବତାମାନଙ୍କର ନିବାସ ରହିଛି ବୋଲି କୁହାଯାଏ । ତେଣୁ ଦେହକୁ ପବିତ୍ର ରଖି ଶୁଦ୍ଧ ଭାବରେ ଚଳିବା ପାଇଁ କୁହାଯାଇଥାଏ ।୧୨। ବ୍ରହ୍ମାଣ୍ଡର ସମସ୍ତ କଳ୍ପିତ ବସ୍ତୁ, ସ୍ଥାନ ଇତ୍ୟାଦି ଶରୀରର ଅଭ୍ୟନ୍ତରରେ ରହିଛି, କେବଳ ଏହାକୁ ଦୃଷ୍ଟି ଖଟାଇ ଦେଖି ପାରିଲେ ହେଲା ।୧୩। ବଳରାମ ଦାସ, ଅଚ୍ୟୁତାନନ୍ଦ ପ୍ରଭୃତି ଶରୀରକୁ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର ସ୍ଥଳ ରୂପେ ଗ୍ରହଣ କରିଛନ୍ତି ।୧୪।

ବଳରାମ ଦାସ, ବ୍ରହ୍ମାଣ୍ଡ ଭୂଗୋଳରେ ଲେଖିଛନ୍ତି, କଣ୍ଠଠାରୁ ଶିଖା ପର୍ଯ୍ୟନ୍ତ ବେଦ ମତରେ ସ୍ୱର୍ଗ । କଣ୍ଠରୁ କଟି ପର୍ଯ୍ୟନ୍ତ ମର୍ତ୍ତ୍ୟ, କଟିରୁ ପାଦଯାଏଁ ପାତାଳ ।୧୫। ଜଗନ୍ନାଥ ଦାସ ଏହି ପିଣ୍ଡ ମଧ୍ୟରେ ବିରାଟ ପୁରୁଷ ଓ ବ୍ରହ୍ମାଣ୍ଡର ପରିକଳ୍ପନା କରି, ଭାଗବତର ପ୍ରଥମସ୍କନ୍ଧ, ଦ୍ୱିତୀୟ ଅଧ୍ୟାୟରେ ଲେଖିଛନ୍ତି, ବୁଦ୍ଧିର ସହଯୋଗରେ ମନକୁ ନିଶ୍ଚଳ କରି ପାରିଲେ, ସ୍ଥୂଳ ମଧ୍ୟରେ ସ୍ଥୂଳତର ଗୋବିନ୍ଦ ଶରୀରଙ୍କ ମଧ୍ୟରେ ସାରା ସଂସାର ଓ ବ୍ରହ୍ମାଣ୍ଡକୁ ଦର୍ଶନ କରିହୁଏ । ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ଶରୀର ମଧ୍ୟରେ ରହିଥିବାର ଦେଖାଯାଏ ।

ବିରାଟ ପୁରୁଷଙ୍କ ପାଦତଳରେ ପାତାଳ, ପାଦର ଅଗ୍ରରେ ରସାତଳ, ଚରଣ ଓ ଗୁଳ୍ଫ ମହୀତଳ ଜଙ୍ଘ ଯୁଗଳରେ ତଳାତଳ, ଜାନୁ ଦ୍ୱୟରେ ସୁତଳ, ଉପର ଭାଗରେ ବିତଳ, ତଳ, ଜଘନରେ ମହୀତଳ, ନାଭିରେ ନଭ ସ୍ଥଳ । ହୃଦୟରେ ସ୍ୱର୍ଗଲୋକ, କଣ୍ଠରେ ମହଲୋକ, ଲଲାଟରେ ତପଲୋକ, ମସ୍ତକରେ ସତ୍ୟଲୋକ, ବାସବ ଆଦି ଦିଗପାଳ, ନାସାରେ ଅଶ୍ୱିନୀ ସୁତ ଇତ୍ୟାଦି ରହିଛନ୍ତି ।୧୬। ବଳରାମ ଦାସଙ୍କର "ଅମରକୋଷ ଗୀତା"ରେ ସମଗ୍ର ବ୍ରହ୍ମାଣ୍ଡରେ ରହିଥିବା ସୃଷ୍ଟି, ପିଣ୍ଡ ମଧ୍ୟରେ ରହିଥିବା କଥାର ବର୍ଣ୍ଣନା ରହିଛି ।୧୭। ବଳରାମ ଦାସ ତାଙ୍କର "ବିରାଟ ଗୀତା"ରେ ମଧ୍ୟ ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡ ରହିଥିବା କଥାର ଉଲ୍ଲେଖ କରି, ପିଣ୍ଡ ବ୍ରହ୍ମାଣ୍ଡ ଏକମତ ବୋଲି କହିଛନ୍ତି ।୧୮। ଅଚ୍ୟୁତାନନ୍ଦ ମଧ୍ୟ "ଚଉରାଶି ଯନ୍ତ୍ର"ରେ ଦେହ ମଧ୍ୟରେ ଅଶେଷପୁର, ସଚରାଚର ରହିଥିବା କଥା କହିଛନ୍ତି । ଯିଏ ଦେହ ଭେଦକରି ଜାଣି ନାହିଁ, ତାହାର ଜ୍ଞାନ ଜ୍ଞାନ ନୁହେଁ ବୋଲି ଅଚ୍ୟୁତାନନ୍ଦ କହିଛନ୍ତି ।୧୯।

ସ୍ୱାମୀ ହରିହରାନନ୍ଦଙ୍କ ମତରେ, ମାନବ ଶରୀରର କଣ୍ଠରୁ ଭ୍ରୂମଧ୍ୟରେ ପଞ୍ଚ ଇନ୍ଦ୍ରିୟ ଲବ୍ଧ ପାଞ୍ଚଜ୍ଞାନର ପ୍ରକାଶ ହୋଇଥାଏ । ଶ୍ରବଣ ଇନ୍ଦ୍ରିୟରେ ଶିବ, ଦର୍ଶନେନ୍ଦ୍ରିୟରେ ସୂର୍ଯ୍ୟ, ରସନେନ୍ଦ୍ରିୟରେ ଅଗ୍ନି, ଘ୍ରାଣେନ୍ଦ୍ରିୟରେ ଗଣେଶ ଏବଂ ସ୍ପର୍ଶେନ୍ଦ୍ରିୟରେ ଦେବତା ବିଷ୍ଣୁ–ଏହିରୂପେ ପାଞ୍ଚ ଇନ୍ଦ୍ରିୟରେ ପାଞ୍ଚ ଦେବତା ରହିଛନ୍ତି ।୨୦। ଏଣୁ ପିଣ୍ଡକୁ ଜାଣିବା ଦ୍ୱାରା ବ୍ରହ୍ମାଣ୍ଡର ଜ୍ଞାନ ଲାଭ ହୋଇପାରେ, ଏକଥା ଯଥାର୍ଥ । ବୈଷ୍ଣବ କବି ଚଣ୍ଡୀ ଦାସ ଭାଣ୍ଡକୁ ଜାଣିଲେ ବ୍ରହ୍ମାଣ୍ଡର ତତ୍ତ୍ୱ ଜାଣି ହୁଏ ବୋଲି କହିଛନ୍ତି ।୨୧। ଏହି ଦେହ ପୁଣି, ୮୪ ଅଙ୍ଗୁଳି ସୀମା ମଧ୍ୟରେ ବ୍ରଜର ୮୪ କୋଶର ତତ୍ତ୍ୱ ଧାରଣ କରିଛି । ଷଡ଼ଚକ୍ରରେ ପଞ୍ଚ ମହାଭୂତ ଏବଂ ସହସ୍ରାରରେ ଚିତ୍ ରୂପକ ଜ୍ୟୋତିର୍ମୟ ସତ୍ତା ରହିଛି ।୨୨। ଏହି ଜ୍ୟୋତିର୍ମୟ ସତ୍ତାକୁ ଅନୁଭବ କରିବା ଦ୍ୱାରା ସାଧକ ସହସ୍ର ଘଟ ମଧ୍ୟରେ ଏକ ରୂପର ଦର୍ଶନ କରିଥାଏ । ବଳରାମ ଦାସଙ୍କ 'ଅମରକୋଷ ଗୀତା' ଅନୁସାରେ, ସହସ୍ର ଘଟରେ ଥିବା ଜଳ, ଘଟ ଭାଙ୍ଗିଗଲା ପରେ ଯେପରି ଶୂନ୍ୟରେ ଲୀନ ହୋଇଯାଏ, ସେହିପରି ସମସ୍ତ ଶରୀରରେ କେବଳ ନିରାକାର ହିଁ ପୂର୍ଣ୍ଣ ହୋଇ ରହିଥାନ୍ତି ।୨୩। ତେଣୁ ଏହି ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡ, କାୟ ଭିତରେ ଅକାୟର ଅନୁଭବ ପାଇଁ, ବିଗ୍ରହ ମଧ୍ୟରେ ଭାବର ଆସ୍ୱାଦନ ପାଇଁ ପଞ୍ଚସଖାଙ୍କର ଏହି ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱର ପରିକଳ୍ପନା ।୨୪।

## ସହଜାନନ୍ଦ :

ଉପନିଷଦରେ ଶରୀର ରୂପକ ବୃକ୍ଷରେ ଆତ୍ମା ରୂପକ ଜୀବାତ୍ମା ପକ୍ଷୀ ଏବଂ ଈଶ୍ୱର ରୂପକ ପରମାତ୍ମା ପକ୍ଷୀ ବାସ କରୁଥିବା କଥାର ବର୍ଣ୍ଣନା କରାଯାଇ, ଜୀବାତ୍ମା ଉକ୍ତ ବୃକ୍ଷର କର୍ମ ଫଳକୁ ଭୋଗ କରିଥିବା ବେଳେ, ପରମାତ୍ମା ପକ୍ଷୀ, ଏଥିରେ କିଛି ପ୍ରକାର ଜଡ଼ିତ ନହୋଇ, କେବଳ ନିରବରେ ଜୀବାତ୍ମା ପକ୍ଷୀର କାର୍ଯ୍ୟ ଦେଖୁଥିବା କଥାର ବର୍ଣ୍ଣନା କରାଯାଇଛି ।୨୫। ଷଟ୍‌ଚକ୍ର ସାଧନାରେ ଏହି ପରମାତ୍ମା ରୂପକ ପକ୍ଷୀକୁ ସାଧକ ନିଜର ଶରୀର ମଧ୍ୟରେ ଉପଲବ୍ଧି କରିଥାଏ । ମୂଳାଧାର ଠାରୁ ଆଜ୍ଞାଚକ୍ର ପର୍ଯ୍ୟନ୍ତ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀ ସାହାଯ୍ୟରେ ପ୍ରାଣଶକ୍ତିକୁ ଊର୍ଦ୍ଧ୍ୱଗାମୀ କରାଇ, ସାଧକ ଶେଷରେ ସହସ୍ରାର ଠାରେ ଚତୁର୍ଦ୍ଧା ମୂର୍ତ୍ତି ଜଗନ୍ନାଥଙ୍କୁ ଦର୍ଶନ କରିଥାଏ । ପଞ୍ଚସଖାଙ୍କର ଏଇ ସାଧନାକ୍ରମ ଥିଲା । ଏହି ସହସ୍ରାର ସ୍ଥ ଚତୁର୍ଦ୍ଧା ମୂର୍ତ୍ତିରୂପୀ ଜଗନ୍ନାଥ ସେମାନଙ୍କ ଦୃଷ୍ଟିରେ ପୂଳ ରୂପ । ହ୍ଲୀଂ, କ୍ଲୀଂ, ଶ୍ଲୀଂ, ଧ୍ଲୀଂ–ଏଇ ଚାରି ବୀଜମନ୍ତ୍ର ଯଥାକ୍ରମେ ବଳଭଦ୍ର, ଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ରୂପେ ନାମିତ ହୋଇ ପ୍ଲୀଂ କୁ ବ୍ରହ୍ମରୂପେ ଅଚ୍ୟୁତାନନ୍ଦଙ୍କ ଦ୍ୱାରା ଚିତ୍ରିତ ହୋଇଛନ୍ତି ।୨୬। ଶରୀରର ପାଞ୍ଚଗୋଟି ଚକ୍ରରେ ସମସ୍ତ ବୀଜମନ୍ତ୍ରକୁ ଶେଷ କରିଦେଇ, ଶେଷରେ ଆଜ୍ଞାଚକ୍ର ଠାରେ, ଅର୍ଥାତ୍ ତ୍ରିବେଣୀର ମିଳନ ସ୍ଥଳରେ ଓଁକାରକୁ ଭଜନ କରିବା ଏବଂ ଶେଷରେ ସହସ୍ରାକୁ ଉଠିଯାଇ, ଓଁକାରକୁ ଶେଷ କରିଦେଇ କେବଳ ନିର୍ଗୁଣଙ୍କୁ ହିଁ ଲାଭ କରିବା ଏହି ପଞ୍ଚସଖା ସାଧନାର ଶେଷ ଲକ୍ଷ୍ୟ ।୨୭। ଏହି ସହସ୍ରାର ଠାରେ ହ୍ଲୀଂ, କ୍ଲୀଂ, ଶ୍ଲୀଂ, ଧ୍ଲୀଂ ରୂପକ ଚାରି ବୀଜମନ୍ତ୍ର ଚତୁର୍ଦ୍ଧା ମୂର୍ତ୍ତି ଏବଂ ପ୍ଲୀଂ ବୀଜ ବିନ୍ଦୁବ୍ରହ୍ମ ହୋଇଛି 'ଛୟାଳିଶ ପଟଳ' ଗ୍ରନ୍ଥର ୩୪ ପଟଳରେ । ପଚିଶ ପଟଳରେ ବ୍ରହ୍ମ ହୋଇଛନ୍ତି ନିର୍ମାୟା ପୁରୁଷ, ଅରୂପ, ଅଦୃଶ୍ୟ, ଅଜ୍ୟୋତି, ଅବିଦ୍ୟା ।୨୮।

ଏଥିରୁ ଦେଖାଯାଏ, ପଞ୍ଚସଖା ପ୍ରାଣାୟାମ ସାଧନାରେ, ମୂଳାଧାରସ୍ଥିତ ସୁପ୍ତ କୁଣ୍ଡଳିନୀକୁ ସୁଷୁମ୍ନାମାର୍ଗରେ ଷଡ଼ଚକ୍ର ଭେଦ କରାଇ, ବ୍ରହ୍ମରନ୍ଧ୍ରଠାରେ ପରମବ୍ରହ୍ମଙ୍କ ସହିତ ମିଳିତ କରାଇବାର ସାଧନାକୁ ସେମାନଙ୍କ ସାଧନାର ମାର୍ଗ ଭାବରେ ଗ୍ରହଣ କରିଛନ୍ତି ।୨୯। ଜ୍ଞାନମିଶ୍ରା ଭକ୍ତି ଉପରେ ପ୍ରାଧାନ୍ୟ ଦେଇଥିଲେ ମଧ୍ୟ ଏମାନେ ଷଡ଼ଚକ୍ର ସାଧନା ଦ୍ୱାରା ମୋକ୍ଷ ଲାଭ କରିବାର ପନ୍ଥା ପ୍ରତି ପରିଷ୍କାର ଇଙ୍ଗିତ ଦେଇ ଯାଇଛନ୍ତି ।୩୦। ଷଡ଼ଚକ୍ର ଭେଦ କରିବା ଦ୍ୱାରା ଏମାନେ ସହସ୍ରାର ସ୍ଥିତ ବ୍ରହ୍ମରନ୍ଧ୍ରରେ ଜଗନ୍ନାଥଙ୍କୁ ହିଁ ପରମବ୍ରହ୍ମ ରୂପେ ଦର୍ଶନ କରିପାରିଛନ୍ତି ।୩୧। ଏହି ସହସ୍ରାରଠାରେ ହ୍ଲୀଂ, କ୍ଲୀଂ, ଶ୍ଲୀଂ, ଧ୍ଲୀଂ ରୂପୀ ଚାରି ବୀଜମନ୍ତ୍ର ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ ରୂପେ ରହିଛନ୍ତି । ଏମାନଙ୍କ ଉପରେ ବିନ୍ଦୁବ୍ରହ୍ମ ପ୍ଲୀଂ ବୀଜ ଅବସ୍ଥାନ କରିଛନ୍ତି ।୩୨। ଏହି ପ୍ରକାର ସାଧନା ଦ୍ୱାରା ସାଧକର ଅନ୍ତର୍ଦ୍ଦୃଷ୍ଟି ଲାଭ ହୋଇଥାଏ । ଯାହା ଫଳରେ ସାଧକ ଚକ୍ଷୁରେ ସମଗ୍ର ଜଗତ ବ୍ରହ୍ମ ରୂପେ ପ୍ରତିଭାତ ହୋଇଥାଏ । ଜଗତରେ ଏମିତି କୌଣସି ବସ୍ତୁ ନାହିଁ, ଯେଉଁଠିକି ଏହି ବ୍ରହ୍ମଙ୍କର ସତ୍ତା ନଥାଏ । ସବୁଠାରେ ସେହି ବ୍ରହ୍ମହିଁ ଦୃଶ୍ୟ ହୋଇଥାନ୍ତି ।୩୩। ଏହା କେବଳ ଧ୍ୟାନ ସମୟର ସେହି ଆତ୍ମବିଭୋର ଅବସ୍ଥାରେ ହିଁ ଲାଭ ହୋଇଥାଏ । ଏହି ଆତ୍ମବିଭୋର ଆନନ୍ଦମୟ ଅବସ୍ଥା ହିଁ ସହଜାନନ୍ଦ ।

ଏଥିରୁ ଦେଖାଯାଏ ଯେ, ଶରୀରସ୍ଥ ଷଡ଼ଚକ୍ର ହିଁ ସମଗ୍ର ଶରୀର ଉପରେ ରାଜତ୍ୱ କରିଥାନ୍ତି । ଅରବିନ୍ଦଙ୍କ ମତରେ ମୂଳାଧାରଚକ୍ର ଜଡ଼ସ୍ତରରୁ ଅବଚେତନ ପର୍ଯ୍ୟନ୍ତ ନିୟନ୍ତ୍ରଣ କରିଥାଏ । ସ୍ୱାଧିଷ୍ଠାନ ଚକ୍ର ଅଧସ୍ତନ ପ୍ରାଣକୁ । ମଣିପୁର ବା ନାଭିକେନ୍ଦ୍ର ବୃହତ୍ତର ପ୍ରାଣକୁ, ହୃଦୟପଦ୍ମ ଆବେଗମୟ ସତ୍ତାକୁ, ବିଶୁଦ୍ଧ ବା କଣ୍ଠଚକ୍ର ବହିଃପ୍ରକାଶ ଓ ବାହ୍ୟ ରୂପ ଦାନକାରୀ ମନକୁ, ଭ୍ରୂଦ୍ୱୟ ମଧ୍ୟସ୍ଥ ଚକ୍ର କ୍ରିୟାଶୀଳମନ, ଇଚ୍ଛାଶକ୍ତି, ଦୃଷ୍ଟିଶକ୍ତି ଆଦିକୁ ନିୟନ୍ତ୍ରଣ କରିଥାଏ । ସହସ୍ରାର ଉଚ୍ଚତର ଚିନ୍ତାଶୀଳ ମନର ପରିଚାଳକ ।୩୪। ଏଥିରୁ ଦେଖାଯାଏ ସ୍ଥୂଳ ତଥା ସୂକ୍ଷ୍ମ ଶରୀର ଉପରେ ଚକ୍ରଗୁଡ଼ିକର ନିୟନ୍ତ୍ରଣ ଶକ୍ତି ରହିଛି । ଏହିସବୁ ସୂକ୍ଷ୍ମତତ୍ତ୍ୱକୁ ପଞ୍ଚସଖା ସେହି ସମୟରେ ମଧ୍ୟ ଅନୁଭବ କରିଥିଲେ ଏବଂ ସେଥିପାଇଁ ସେମାନେ ବୋଧହୁଏ

ଚିତ୍ତ ଶୁଦ୍ଧ, ସଂଯମ, ସଦାଗ୍ରହ ଆଦି କାର୍ଯ୍ୟ ପ୍ରାଣାୟାମ ସାଧନା ଦ୍ୱାରା ଷଟ୍‌ଚକ୍ର ଭେଦକରି ମନକୁ ଅମନ ସ୍ତରକୁ ନେଇ ସର୍ବତ୍ର ସେହି ଏକ ବ୍ରହ୍ମଙ୍କର ଜ୍ୟୋତି ରୂପ ଦର୍ଶନ କରି ସମଦୃଷ୍ଟି ଭାବନା ଜାଗ୍ରତ କରି ପାରିଥିଲେ । ନିଜର ମୋକ୍ଷଦାତା ଭାବରେ ସେମାନେ ଜଗନ୍ନାଥ ରୂପୀ ନିର୍ଗୁଣ ବ୍ରହ୍ମଙ୍କୁ ହିଁ ନିଜ ପିଣ୍ଡ ମଧ୍ୟରେ ଦର୍ଶନ କରିପାରିଥିଲେ । ଏହା ହିଁ ସେମାନଙ୍କର ମହାଶୂନ୍ୟରେ ଭ୍ରମାଙ୍କର ଉପଲବ୍ଧି, ସହଜାନନ୍ଦ ଏବଂ ପିଣ୍ଡ ବ୍ରହ୍ମାଣ୍ଡ ସାଧନା ।୩୪।

ଆଜି ସେହି ପଞ୍ଚ ମହାଯୋଗୀଙ୍କ ସୂକ୍ଷ୍ମ ସରଳ ସାଧନା ପୁଣିଥରେ ଉତ୍କଳରେ ଉପଲବ୍ଧ ହେଉ ଏବଂ ଜଗତର କାରଣ ସ୍ୱରୂପ ଶ୍ରୀଜଗନ୍ନାଥ ମହାପ୍ରଭୁ ପୁଣି ଥରେ ଏ ଦେଶବାସୀଙ୍କ ଅନ୍ତର୍ଦୃଷ୍ଟିରେ ଜାଗ୍ରତ ହୁଅନ୍ତୁ । ଜୟ ଜଗନ୍ନାଥ ।

**ପାଦଟୀକା:-**

(୧) ପୌରୁଷ-ଜୁଲାଇ- ୧୯୯୧-ପୃ-୨୦, (୨) ଓଡ଼ିଶା ଇତିହାସ (୨ୟ ଖଣ୍ଡ) ଡଃ ହରେକୃଷ୍ଣ ମହତାବ-ପୃ-୪୭, ୪୮, (୩) ଓଡ଼ିଶୀ ବୈଷ୍ଣବ ଧର୍ମ, ଡଃ କାହ୍ନୁଚରଣ ମିଶ୍ର, ପୃ-୯୬, (୪) ସାହିତ୍ୟିକ ଦିଗ୍‌ଦର୍ଶନ, ଡଃ ବାସୁଦେବ ସାହୁ, ପୃ-୪, ୫, (୫) କୋଣାର୍କ, ୨୨ତମ ସଂଖ୍ୟା, ୧୯୮୬, ପୃ-୯୮, (୬) ପୌରୁଷ, ଜୁଲାଇ, ୧୯୭୬, ପୃ-୩୫, (୭) ସାହିତ୍ୟିକ ଦିଗ୍‌ଦର୍ଶନ-ଡଃ ବାସୁଦେବ ସାହୁ-ପୃ-୫୩, ୫୪, (୮) ଯୋଗ ପ୍ରଦୀପ- ଶ୍ରୀଅରବିନ୍ଦ-ଅନୁବାଦକ ଶ୍ରୀ ରାମକୃଷ୍ଣ ଦାସ ଓ କୁଞ୍ଜବିହାରୀ ମହାନ୍ତି-ପୃ-୧୪, (୯) ସର୍ବ ଦର୍ଶନ କୌମୁଦୀ (ସଂସ୍କୃତ-ମହାମହୋପାଧ୍ୟାୟ ବିଦ୍ୟାସାଗର ପଣ୍ଡିତ ଦାମୋଦର ମହାପାତ୍ର ଶାସ୍ତ୍ରୀ-ପୃ-୨୫୦, (୧୦) ବ୍ରହ୍ମାଣ୍ଡ ଭୂଗୋଳ-ସଂପାଦନା-ଡଃ ବୈଷ୍ଣବଚରଣ ସାମଲ-ପୃ-୧୯, (୧୧) ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ-ଚିତ୍ତରଞ୍ଜନ ଦାସ-ପୃ-୧୦୩, ୧୦୪, (୧୨) ପୁରାଣ ଦର୍ଶନ-୮ମ ବର୍ଷ ୨ୟ ସଂଖ୍ୟା-ପୃ-୪୭, (୧୩) ଅଚ୍ୟୁତାନନ୍ଦ ଓ ପଞ୍ଚସଖାଧର୍ମ-ଚିତ୍ତରଞ୍ଜନ ଦାସ-ପୃ-୧୦୬, (୧୪) ଏଜନ୍, (୧୫) ବ୍ରହ୍ମାଣ୍ଡ ଭୂଗୋଳ-ସଂପାଦନା ଡଃ ବୈଷ୍ଣବଚରଣ ସାମଲ-ପୃ-୬୮, (୧୬) ଏଜନ୍ ପୃ-୧୯, ୨୦, (୧୭) ଏଜନ୍ ପୃ-୨୦, (୧୮) ଓଡ଼ିଶୀ ବୈଷ୍ଣବ ଧର୍ମ-ଡକ୍ଟର କାହ୍ନୁଚରଣ ମିଶ୍ର-ପୃ-୬୬, (୧୯) ବ୍ରହ୍ମାଣ୍ଡ ଭୂଗୋଳ-ସଂପାଦନା ଡଃ ବୈଷ୍ଣବଚରଣ ସାମଲ-ପୃ-୨୧, (୨୦) ପୌରୁଷ-ସେପ୍ଟେମ୍ବର ୧୯୭୦-ପୃ-୮୬, (୨୧) ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ-ଚିତ୍ତରଞ୍ଜନ ଦାସ-ପୃ-୧୦୮, (୨୨) ଚୌରାଶୀ ବୃନ୍ଦାବନ-ଶ୍ରୀ ଦେବେନ୍ଦ୍ରନାଥ ହୋତା-ପୃ-୧୨୩, (୨୩) ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ-ଚିତ୍ତରଞ୍ଜନ ଦାସ-ପୃ-୨୦୧, (୨୪) ଏଜନ୍-ପୃ-୨୦୬, (୨୫) ଶୋଭିନୀ ଉପନିଷଦ-ତୃତୀୟ ମୁଣ୍ଡକ-ପ୍ରଥମ ଖଣ୍ଡ (ହିନ୍ଦି)-ଗୀତାପ୍ରେସ-ପୃ-୨୧୯, (୨୬) ବ୍ରହ୍ମାଣ୍ଡ ଭୂଗୋଳ-ସଂପାଦନା-ଡଃ ବୈଷ୍ଣବଚରଣ ସାମଲ-ପୃ-୩୩, (୨୭) ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ-ଚିତ୍ତରଞ୍ଜନ ଦାସ-ପୃ-୧୫୩, (୨୮) ଏଜନ୍-ପୃ-୧୪୫,୧୪୬ (୨୯) ଭାଗବତ ମୁହୂର୍ତ୍ତ-ଶ୍ରୀଅରବିନ୍ଦ-ଅନୁବାଦ ରାଜେଶ୍ୱରୀ ଓଝା-ପୃ-୩୬, (୨୯) ଓଡ଼ିଶୀ ବୈଷ୍ଣବ ଧର୍ମ-ଡଃ କାହ୍ନୁଚରଣ ମିଶ୍ର-ପୃ-୪୫, (୩୦) ବ୍ରହ୍ମାଣ୍ଡ ଭୂଗୋଳ-ସଂପାଦନା-ଡଃ ବୈଷ୍ଣବଚରଣ ସାମଲ-ପୃ-୨୫, (୩୧) ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ-ଚିତ୍ତରଞ୍ଜନ ଦାସ-ପୃ-୧୫୦, (୩୨) ଏଜନ୍-ପୃ-୧୫୪, (୩୩) ଏଜନ୍, (୩୪) ଯୋଗ-ପ୍ରଦୀପ-ଶ୍ରୀଅରବିନ୍ଦ-ପୃ-୧୬ ।

ସା/ପୋ-ମେରୁଦା, ଭାୟା-କୁସୁମୁଣ୍ଡା,
ଜିଲ୍ଲା-ମୟୂରଭଞ୍ଜ-୭୫୭୦୫୧ ।



ସଚିବାଳୟଠାରେ ରାଜ୍ୟ ଯୋଜନା ବୋର୍ଡ଼ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି । (୨୫/୧୧) ।



ଅମୃତେଶ୍ୱର ଚିକିତ୍ସାଳୟ ପରିସର ମଧ୍ୟରେ ମାନ୍ୟବର ରାଜ୍ୟପାଳ, ଶ୍ରୀ ଯଜ୍ଞଦତ୍ତ ଶର୍ମା ଏକ ନବ ନିର୍ମିତ କିରଣବାଳା ଷଷ୍ଠଗୃହ ଅଟ୍ଟାଳିକାକୁ ଉଦ୍‌ଘାଟନ କରୁଛନ୍ତି (୩୦/୧୧)।



ଓମ୍‌ଫେଡ୍‌ର ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ବିଶ୍ୱ ବ୍ୟାଙ୍କର ଏଗାର ଜଣିଆ ପ୍ରତିନିଧି ଦଳଙ୍କ ସହ ଆଲୋଚନା କରୁଛନ୍ତି (୨୦/୧୧)।



କଟକ ଜିଲ୍ଲାର କନ୍ଦରପୁରଠାରେ ବାଚସ୍ପତି, ଶ୍ରୀ ଯୁଧିଷ୍ଠିର ଦାସ ବାତ୍ୟା ଦ୍ୱାରା
କ୍ଷତିଗ୍ରସ୍ତ ହୋଇଥିବା ଲୋକମାନଙ୍କୁ ଆର୍ଥିକ ସହାୟତା
ପ୍ରଦାନ କରୁଛନ୍ତି (୮/୧୧)।




ବୈଦ୍ୟାରଠାରେ କାର୍ତ୍ତିକେଶ୍ୱର ପୂଜା କମିଟି ଦ୍ୱାରା ଆୟୋଜିତ ଏକ ସଭାରେ ସଂସ୍କୃତି
ବିଭାଗ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଉଦ୍‌ବୋଧନ ଦେଉଛନ୍ତି (୨୯/୧୧)।



ଆମ୍ବବାଠାରେ ଗୋବରୀ ହାଇସ୍କୁଲର ରଜତ ଜୟନ୍ତୀ ଉତ୍ସବରେ
.ଜଳସେଚନ ଓ ସଂସଦୀୟ ବ୍ୟାପାର ବିଭାଗ ମନ୍ତ୍ରୀ,
ଶ୍ରୀ ବିଜୟ ମହାପାତ୍ର ଉଦ୍‌ବୋଧନ ଦେଉଛନ୍ତି ।



ଭୁବନେଶ୍ୱର ୩ ନସରଛିତ ପ୍ରେସ୍ କଲୋନୀ ଉଚ୍ଚ ଇଂରାଜୀ ବିଦ୍ୟାଳୟଠାରେ
ଅନୁଷ୍ଠିତ ଶିଶୁ ଦିବସ ଉଦ୍‌ଘାଟନୀ ଉତ୍ସବରେ ଆଇନ ବିଭାଗ ମନ୍ତ୍ରୀ,
ଶ୍ରୀ ନରସିଂହ ମିଶ୍ର ପୁରସ୍କାର ବିତରଣ କରୁଛନ୍ତି ।



ସୂଚନା ଭବନଠାରେ ଅନୁଷ୍ଠିତ ରାଜ୍ୟସ୍ତରୀୟ 'କ୍ୱାମୀ ଏକତା ସପ୍ତାହ' ଉତ୍ସବରେ ଜାତୀୟ ସଂହତି
ଶପଥ ପାଠ (୧୯/୧୧) ।



ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ, ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଗ୍ରାମାଞ୍ଚଳ ପାନୀୟ ଜଳ ଯୋଗାଣର ଅଗ୍ରଗତି ସମ୍ପର୍କରେ ସଚିବାଳୟଠାରେ ସମୀକ୍ଷା କରୁଛନ୍ତି



ଭୁବନେଶ୍ୱରଠାରେ ଅନୁଷ୍ଠିତ ମତ୍ସ୍ୟ କ୍ଷେତ୍ର ପଦାଧିକାରୀମାନଙ୍କ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଉଦ୍ଘାଟନୀ ଉତ୍ସବରେ ପଶୁ ସମ୍ପଦ ବିକାଶ ବିଭାଗ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଅଭିଭାଷଣ ଦେଉଛନ୍ତି (୧୯/୨୭)।

# ଭଗବଦ୍ ଗୀତାରେ ଶ୍ରଦ୍ଧାର ବିଭାଗ

ବସନ୍ତ ମଲ୍ଲିକ

ଏକବିଂଶ ଶତାବ୍ଦୀକୁ ସ୍ୱାଗତ କରିବା ପାଇଁ ବିଶ୍ୱବାସୀଙ୍କ ସହ ଭାରତ ଆଜି ଆଗ୍ରହର ସହ ଅପେକ୍ଷା କରିଛି । ଭାରତର ଇଞ୍ଜିନିୟର, ବୈଜ୍ଞାନିକ, ଡାକ୍ତର ବିଦେଶରେ ନାଁ କରି ସାରିଲେଣି । ରାକେଶ ଶର୍ମା ଉପଗ୍ରହ ସ୍ପର୍ଶ କରିଥିବାରୁ ଏ ଦେଶ ଆଜି ଗର୍ବ ଅନୁଭବ କରୁଛି । ବିଜ୍ଞାନର କୁହୁକ ଭାରତୀୟଙ୍କୁ ମୁଗ୍ଧ କରୁଥିଲା ବେଳେ ରାଜନୀତି ସମାଜକୁ କଳୁଷିତ ଏବଂ ଉଦ୍‌ଭ୍ରାନ୍ତ କରୁଛି । ମନୁ ସ୍ମୃତିରେ ସ୍ପଷ୍ଟ ଭାବରେ ଦର୍ଶାଯାଇଅଛି ଯେ ଭାରତବର୍ଷରେ ରାଜତନ୍ତ୍ର କେବେହେଲେ ମୁଖ୍ୟ ସ୍ଥାନ ଗ୍ରହଣ କରିପାରି ନାହିଁ । ସବୁବେଳେ ଧର୍ମ ହିଁ ରାଷ୍ଟ୍ରର ନିୟନ୍ତ୍ରକ ଥିଲା; ଏବେ ବି ଅଛି । ଧର୍ମ ଭାବନା ବିହୀନ ଆଜିର ରାଜନୀତି ଦ୍ୱାରା ଆମ ଦେଶର ସଂହତି ଘୋର ବିପର୍ଯ୍ୟୟର ସମ୍ମୁଖୀନ । ଭାରତୀୟମାନଙ୍କୁ ଏ ଦେଶର ଗର୍ବ ଗୌରବ ବିଷୟରେ ଜାଣିବାକୁ ସୁଯୋଗ ଦିଆଯାଉ ନାହିଁ । ପ୍ରସିଦ୍ଧ ନ୍ୟାୟ ଶାସ୍ତ୍ରବିତ୍ ନନିପାଲ୍‌କିବାଲା ଭାରତର ସୁନା ଫଳୁଛି ବୋଲି ଦର୍ଶାଇଥିଲା ବେଳେ ସୁପ୍ରିମ୍ କୋର୍ଟର ପ୍ରଧାନ ବିଚାରପତି ନ୍ୟାୟମୂର୍ତ୍ତି ମାନ୍ୟବର ରଙ୍ଗନାଥ ମିଶ୍ରଙ୍କ ମତରେ – "ମାଟି ତଳେ ପୋତି ହୋଇଥିବା ଏହି ସୁନା ହେଉଛି ଭାରତବର୍ଷର ଆଧ୍ୟାତ୍ମିକତା ଓ ଜ୍ଞାନ ବିଜ୍ଞାନରେ ପରିପୂର୍ଣ୍ଣ ସଂସ୍କୃତ ଭାଷା ।

ନୂତନ ଧର୍ମ ଓ ଉପଧର୍ମର ସୃଷ୍ଟି ପୁରାତନର ସଂସ୍କାର ଏବଂ ନୂତନ ନୂତନ ବ୍ୟାଖ୍ୟା ଓ ମତରେ ପ୍ରଚାର ହେଉଅଛି । କିନ୍ତୁ ମୂଳ ଆର୍ଯ୍ୟ ଶାସ୍ତ୍ରରେ ନିହିତ ଧର୍ମର ମୂଳ ସୂତ୍ର ଘେନି ଲୋକେ ଆପଣା ଆପଣାର ରୁଚି ଅନୁସାରେ ନାନା ପ୍ରକାର ବ୍ୟାଖ୍ୟା ଓ ମତ ପ୍ରଚାର କରିବା ଦ୍ୱାରା ଆର୍ଯ୍ୟ ଶାସ୍ତ୍ର ବହୁ ଦୂରକୁ ଗତି କରି ଚମତ୍କାରିତା ପ୍ରଦର୍ଶନ କରାଇ ପାରିଛି । ଆର୍ଯ୍ୟ ଶାସ୍ତ୍ରର ସମସ୍ତ ନୀତି ନିୟମ ବେଦ ଉପନିଷଦରେ ଅଛି । ଏହା ସଂସ୍କୃତ ଭାଷାରେ ଲିଖିତ ବେଦ ଉପନିଷଦ ହେଉଛି ଭାରତୀୟ ସାହିତ୍ୟର ଅସ୍ମାରସ୍ତ । ଏହା ସାରା ବିଶ୍ୱରେ ଏକ ଅପୂରଣୀୟ ସ୍ଥାନ ଦଖଲ କରି ପାରିଥିଲା । ଏହାକୁ ଲକ୍ଷ୍ୟ କରି ଯୋଗୀ ଅରବିନ୍ଦ ଲେଖିଛନ୍ତି : The sun ofIndia'sdestiny would rise and fill All India with its light and overflow India and overflow Asia and overflow the world.

ଉପନିଷଦର ଈଶା, କେନ ଏବଂ କଠ ଉପନିଷଦ ପୃଥିବୀର ପ୍ରତି କୋଣରେ ବିସ୍ତାର ଲାଭ କରିପାରିଥିଲା ବୋଲି ଗବେଷଣା ପ୍ରିୟ ଜର୍ମାନ ଓ ଆମେରିକାବାସୀମାନେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଆଜିର ଯୁଗରେ ଏହାର ମହତ୍ତ୍ୱକୁ ଉପଲବ୍ଧି କରି ପାରିଛନ୍ତି । ଈଶା ଉପନିଷଦକୁ ସମସ୍ତ ଉପନିଷଦଭିତରେ ଏହାର ସ୍ୱାତନ୍ତ୍ର୍ୟତା ପାଇଁ ପ୍ରଥମ ବୋଲି ଗଣାଯାଏ । ଏହି ଉପନିଷଦର ପ୍ରଥମ ଶ୍ଳୋକରେ ଥିବା ଦର୍ଶନ ପରବର୍ତ୍ତୀ ଯୁଗରେ ଭଗବଦ୍ ଗୀତାର ଦାର୍ଶନିକ ଭିତ୍ତି ଭୂମି ଭାବରେ ପ୍ରତିଷ୍ଠିତ । ପ୍ରକୃତରେ ଦେଖିବାକୁ ଗଲେ ଈଶା ଉପନିଷଦ ଏବଂ ଭଗବଦ୍ ଗୀତା ମଧ୍ୟରେ ଘନିଷ୍ଠ ଆଧ୍ୟାତ୍ମିକ ସାମଞ୍ଜସ୍ୟ ରହିଅଛି ।

ଭାରତରେ ପ୍ରାଚୀନ ଏବଂ ଆଧୁନିକ ଚିନ୍ତାଶୀଳ ମନିଷୀଗଣ ଈଶା ଉପନିଷଦରୁ ପ୍ରେରଣା ପାଇପାରିଛନ୍ତି । ଏଣୁ ଈଶା ଉପନିଷଦ ପ୍ରଥମେ ପାଠ କରିବା ।

"ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣ ମୁଦଚ୍ୟତେ<br>
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବା ବଶିଷ୍ୟତେ ।"<br>
ଓଁ ଶାନ୍ତିଃ, ଓଁ ଶାନ୍ତିଃ, ଓଁ ଶାନ୍ତିଃ ।

କିନ୍ତୁ ଆମର ଲକ୍ଷ୍ୟ ହେବ ଭଗବଦ୍ ଗୀତା ପାଠ କରିବା । ବିବେକାନନ୍ଦ କହିଛନ୍ତି ଭଗବଦ୍ ଗୀତାରେ ଯୁଗ ଯୁଗର ଦର୍ଶନ ରହିଅଛି । ଏହି ଗୀତା କୌଣସି ନିର୍ଦ୍ଦିଷ୍ଟ ମତବାଦକୁ ନିର୍ଦ୍ଦେଶ ଦିଏ ନାହିଁ । ଏହା ଜୀବନର ଅନ୍ତରତମ ପ୍ରଦେଶରେ କମ୍ପନ ସୃଷ୍ଟି କରାଇଥାଏ । ମନୁଷ୍ୟ ଜୀବନରେ ସମସ୍ତ ପ୍ରକାର ସୁଖ ଏବଂ ଅନୁଭୂତି ହାସଲ କରିବା ପାଇଁ ସହାୟକ ହୁଏ । ପ୍ରାଚ୍ୟ ଏବଂ ପାଶ୍ଚାତ୍ୟ ଦେଶର ଲୋକେ ଆଧ୍ୟାତ୍ମିକ ଜଗତରେ ପ୍ରବେଶ କରି ପାରିଥାନ୍ତି । ଭଗବଦ୍ ଗୀତାର ଆଧ୍ୟାତ୍ମିକ ଏବଂ ଦାର୍ଶନିକ ଭିତ୍ତି ଭୂମି ଉପନିଷଦରୁ ହିଁ ଆସିଅଛି । ତା'ଛଡ଼ା ମୁସଲମାନମାନଙ୍କର କୋରାନ୍, ଖ୍ରୀଷ୍ଟିଆନ୍‌ମାନଙ୍କର ବାଇବେଲ୍‌ର ମୂଳ ଭିତ୍ତି ଉପନିଷଦରୁ ହିଁ ଆନୀତ ।

ଉପନିଷଦ ସ୍ୱୟଂ ସୃଷ୍ଟିକର୍ତ୍ତାଙ୍କ ଦ୍ୱାରା ରଚିତ ବୋଲି ଆର୍ଯ୍ୟ ମନିଷୀଗଣ ପ୍ରଚାର କରି ଯାଇଛନ୍ତି । ଯୁଗର ପରିବର୍ତ୍ତନ ବେଳେ ସ୍ୱୟଂ ଭଗବାନ ମାନବ ରୂପ ଧାରଣ କରି ଉପନିଷଦର ପ୍ରଚାର ମାଧ୍ୟମରେ ଶାନ୍ତି ପ୍ରତିଷ୍ଠା କରି ଯାଇଛନ୍ତି ।

ଭଗବଦ୍ ଗୀତାର ସୃଷ୍ଟି ହେଉଛି ଦ୍ୱାପର ଯୁଗରେ । ୍ରୁକ୍ଷେତ୍ରଠାରେ କୌରବ ଏବଂ ପାଣ୍ଡବଙ୍କ ମଧ୍ୟରେ ଧର୍ମର ପ୍ରତିଷ୍ଠା ାଇଁ ମହାଭାରତ ଯୁଦ୍ଧ ଚାଲିଥାଏ । ଅର୍ଜୁନଙ୍କ ସାରଥି ସାଜି ୀକୃଷ୍ଣ ନିଜ ମୁଖ ନିସୃତ ବାଣୀ ଅର୍ଜୁନଙ୍କୁ ଶୁଣାଉଥିବା ସଙ୍ଗେ ସଙ୍ଗେ ିଶ୍ୱବାସୀଙ୍କୁ ମଧ୍ୟ ଶୁଣାଇଥିଲେ ।

ଶ୍ରୀକୃଷ୍ଣ ହେଉଛନ୍ତି ଅନନ୍ତ, ନାରାୟଣ ଓ ପରଂବ୍ରହ୍ମଙ୍କର ପରିପୂର୍ଣ୍ଣ ା ଲୀଳାମୟ ଅବତାର । ସେ ଇଚ୍ଛାମୟ । ଯେତେବେଳେ ର୍ତ୍ତ୍ୟରେ ପାପର ଭାରା ଦୁର୍ବିସହ ହୋଇପଡ଼େ; ସେତେବେଳେ ଗବାନ ମର୍ତ୍ତ୍ୟରେ ଅବତାର ଗ୍ରହଣ କରି ପାପୀମାନଙ୍କୁ ବିନାଶ ରନ୍ତି ଏବଂ ସାଧୁ ସନ୍ଥଙ୍କୁ ପରିତ୍ରାଣ କରନ୍ତି ।

"ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍
ପରିତ୍ରାଣାୟ ସାଧୁନାଂ ବିନାଶାୟଚ ଦୁଷ୍କୃତମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।
(୪ର୍ଥ ଅ: ୭, ୮ ଶ୍ଳୋକ)

କଂସାଦି ରାକ୍ଷସମାନଙ୍କର ଉତ୍ପୀଡ଼ନରେ ଦେବଗଣ ଅତିଷ୍ଠ ହୋଇପଡ଼ିଲେ । ବସୁଧା ଅଗଦର ହୋଇପଡ଼ି ସୁରଭୀ ରୂପ ଧାରଣ କରି ବ୍ରହ୍ମାଙ୍କ ନିକଟରେ ନିବେଦନ କଲେ । ବ୍ରହ୍ମାଦି ଦେବ ଙ୍କ ଆକୁଳ ପ୍ରାର୍ଥନାରେ କ୍ଷୀରାବ୍ଧିଶାୟୀ ବିଷ୍ଣୁ ମର୍ତ୍ତ୍ୟରେ ଜନ୍ମ ହୋଇଥିଲେ । ସଂସ୍କୃତ ଭାଗବତରେ ରହିଅଛି :

"ଭୂମିର୍ଦୃପ୍ତନୃପବ୍ୟାଜ ଦୈତ୍ୟାନୀକ ଶତାୟୁତୈଃ
ଆକ୍ରାନ୍ତାଭୂରିଭାରେଣ ବ୍ରହ୍ମାଣଂ ଶରଣଂ ଯଯୌ
ବ୍ରହ୍ମା ତଦୁପଧାର୍ଯ୍ୟାର୍ଥ ସହ ଦେବୈସ୍ତୟା ସହ
ଜଗାମ ସତ୍ରିନୟନସ୍ତୀରଂ କ୍ଷୀର ପୟୋ ନିଧେଃ
ବସୁଦେବ ଗୃହେ ସାକ୍ଷାତ୍ ଭଗବାନ ପୁରୁଷଃ ପରଃ
ଜନିଷ୍ୟତେ ତତ୍ ପ୍ରିୟାର୍ଥ ସମ୍ଭବନ୍ତୁ ସୁରସ୍ତ୍ରିୟଃ ।"
(୧୦ମ ସ୍କନ୍ଧ, ୧ମ ଅଧ୍ୟାୟ)

ମହାଭାରତ ଯୁଦ୍ଧ ପ୍ରାୟ ଆରମ୍ଭ । କୌରବ ପକ୍ଷର ମହା ମହା ୀରମାନେ ଯୁଦ୍ଧ ପାଇଁ ସଜ ହୋଇ ସାରିଲେଣି । ଅର୍ଜୁନଙ୍କ ନରେ ଦୁଃଖ । କାରଣ ସେ ନିଜର ଜ୍ଞାତିମାନଙ୍କ ସହ ଲଢ଼େଇ ରିବେ । ଏଣେ ପୃଥିବୀରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ୀକୃଷ୍ଣଙ୍କର ଇଚ୍ଛା । ଦୁଃଖିତ ଅର୍ଜୁନଙ୍କୁ ବିଭିନ୍ନ ବିଷୟରେ ୍ୱାଉଥାନ୍ତି । ତାଙ୍କ ମୁଖ ନିସୃତ ବାଣୀ ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ମଧ୍ୟ ୁଣାଉଥାନ୍ତି । ସେଦିନ ଅର୍ଜୁନ ଶ୍ରଦ୍ଧା ସମ୍ବନ୍ଧରେ ଜାଣିବା ଦ୍ଦେଶ୍ୟରେ ପ୍ରଶ୍ନ କଲେ — ହେ କୃଷ୍ଣ ! ଯେଉଁମାନେ ଶାସ୍ତ୍ର ବିଧି ାଗ କରି ଶ୍ରଦ୍ଧାଯୁକ୍ତ ହୋଇ ଦେବାଦି ପୂଜା କରନ୍ତି ସେମାନଙ୍କର ଷ୍ଠା କିପରି ? ସତ୍ତ୍ୱ ଗୁଣଯୁକ୍ତ ବା ରଜ ଓ ତମୋ ଗୁଣ ମିଶ୍ରିତ ଟେ ।

ଶ୍ରୀକୃଷ୍ଣ ସ୍ମିତ ହାସ୍ୟ ବଦନରେ କହିଲେ :

"ତ୍ରିବିଧା ଭବତି ଶ୍ରଦ୍ଧା ଦେହିନାଂ ସା ସ୍ୱଭାବଜା
ସାତ୍ତ୍ୱିକୀ ରାଜସୀ, ଚୈବ ତାମସୀ ଚେତିତାଂଶୃଣୁ ।"

ଶ୍ରୀକୃଷ୍ଣଙ୍କର ଏହି ଭିନ୍ନ ଶୈଳୀର ମୁଖ ନିସୃତ ଶ୍ଳୋକଟି କଠ ଉପନିଷଦ ସହ ସାମଞ୍ଜସ୍ୟ ରହିଥିବାର ଲକ୍ଷ୍ୟ କରାଯାଏ । ଶ୍ରଦ୍ଧା ବିଶ୍ୱାସରୁ ହିଁ ଆସେ ।

"ତଂହ କୁମାରଂ ସନ୍ତଂ ଦକ୍ଷିଣା ସୁନୀୟ—
ମାନାସୁ ଶ୍ରଦ୍ଧାଂ ବିବେଶ ସୋଽମନ୍ୟତ ।"

ଶ୍ରଦ୍ଧା ତିନି ପ୍ରକାର ଅଟେ । ସାତ୍ତ୍ୱିକୀ, ରାଜସୀ ଓ ତାମସୀ । ସବୁ ଲୋକର ଶ୍ରଦ୍ଧା ନିଜର ସ୍ୱଭାବ ଅନୁଯାୟୀ ଅଟେ । ମନୁଷ୍ୟ ସ୍ୱଭାବରେ ଶ୍ରଦ୍ଧାମୟ ଅଟେ । ସାତ୍ତ୍ୱିକ ସ୍ୱଭାବ ବ୍ୟକ୍ତି ଦେବତାମାନଙ୍କୁ ପୂଜା କରନ୍ତି । ରାଜସିକ ସ୍ୱଭାବ ବ୍ୟକ୍ତି ଯକ୍ଷ ଏବଂ ରାକ୍ଷସଙ୍କୁ ପୂଜା କରନ୍ତି ଏବଂ ତାମସିକ ସ୍ୱଭାବ ବ୍ୟକ୍ତି ଭୂତ, ପ୍ରେତଙ୍କୁ ଶ୍ରଦ୍ଧା ପୂର୍ବକ ପୂଜା କରନ୍ତି ।

ଦମ୍ଭ ଏବଂ ଅହଂକାର ଯୁକ୍ତ ହୋଇ କାମ କ୍ରୋଧ ବଳରେ ତପ କରନ୍ତି, ଯାହାକି ଶାସ୍ତ୍ର ବିଧାନ ନୁହେଁ ।

"କାମ ଏଷା କ୍ରୋଧ ଏଷା ରଜୋ ଗୁଣ ସମୁଦ୍ଭବଃ
ମହାସାନୋ ମହାପାପମ୍ ବିଧେନାମଇ ହବୈରିନାମ୍ ।"

ନିଜର ମୂର୍ଖତା ହେତୁ ନିଜ ଶରୀରରେ ଥିବା ପଞ୍ଚ ମହା ଭୂତଙ୍କୁ କଷ୍ଟ ଦେଇଥାଏ ଏବଂ ଶରୀର ଭିତରେ ଅନ୍ତଃ କଷ୍ଟ ଅନୁଭବ କରିଥାଏ ।

ଭଗବଦ୍ ଗୀତାର ସତର ଅଧ୍ୟାୟକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ଏହି ଅଧ୍ୟାୟରେ ଯଜ୍ଞ, ଦାନ, ତପ, ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଅଟେ ।

ଆମେ ଏହି ସଂସାରରେ ତିନି ପ୍ରକାର ସଂସ୍ଥାରେ ବୁଡ଼ି ରହି ଅଛନ୍ତି । ପ୍ରଥମଟି ନିଜର ଶରୀର, ଦ୍ୱିତୀୟଟି ସୃଷ୍ଟି ବା ସଂସାର ଏବଂ ତୃତୀୟଟି ଶରୀର ଏବଂ ସଂସାର ମଝିରେ ଆମର ସମାଜ ବିଦ୍ୟମାନ । ଯଜ୍ଞ ସଂସାର ସହ, ଦାନ ସମାଜ ସହ ଏବଂ ତପସ୍ୟା ଶରୀର ସହ ସମ୍ବନ୍ଧ ରଖିଅଛି ।

"ଯଜ୍ଞେ ତପ ସିଦାନେଚ ସ୍ଥିତିଃ ସଦିତି ଚୋଚ୍ୟତେ
କର୍ମ ଚୈବ ତଦର୍ଥୀୟଂ ସଦିତ୍ୟେ ବାଭିଧୀୟତେ"
(ସେପ୍ତଦଶୋଽଧ୍ୟାୟ, ୨୭ ଶ୍ଳୋକ)

ସଂସାରଠାରୁ ଆମେ ପ୍ରତିଦିନ କାମ ଆଦାୟ କରୁଅଛୁଁ । ଆମେ ଯେଉଁଠାରେ ବାସ କରୁଅଛୁଁ ତାକୁ ଦୂଷିତ କରୁଅଛୁଁ । ପବନକୁ ଆମେ ଶ୍ୱାସ ପ୍ରଶ୍ୱାସରେ ଗ୍ରହଣ କରି ଶରୀର ଭିତରେ ତାକୁ ଦୂଷିତ କରି ବାହାରକୁ ଛାଡୁଅଛୁଁ । ସଂସାରରେ ଆମେ ପ୍ରତିଦିନ ଯାହା ଦୂଷିତ କରୁ ତାହାକୁ ବିଶୁଦ୍ଧ କରିବା ପାଇଁ ଯଜ୍ଞର ଆଶ୍ରୟ ନେଇଥାଉଁ ।

ସମାଜରେ ବାପ ମା, ଗୁରୁ, ସାଙ୍ଗସାଥି ଆମ ପାଇଁ ପରିଶ୍ରମ କରୁଥାନ୍ତି । ସେ ଋଣ ସୁଝିବା ପାଇଁ ଦାନ ଦେବାକୁ ହୋଇଥାଏ । ଦାନର ଅର୍ଥ ପରୋପକାର ନୁହେଁ — ଏହାର ପ୍ରକୃତ ଅର୍ଥ ସମାଜର ଋଣ ସୁଝିବା । କାରଣ ସମାଜଠାରୁ ଆମେ

ଅନେକ ଉପକାର ପାଇଥାଉଁ । ଆମେ ଯେତେବେଳେ ଜନ୍ମ ହେଲୁ ସେତେବେଳେ ଖୁବ୍ ଦୁର୍ବଳ ଏବଂ ଅସହାୟ ଥିଲୁ । ଏ ସମାଜ ଆମକୁ ବଡ଼ କରାଇ ଥିବାରୁ ସମାଜର ସେବା କରିବା ଆମର ପ୍ରଧାନ କର୍ତ୍ତବ୍ୟ ଅଟେ । ପରୋପକାର ଅର୍ଥ କାହାଠାରୁ କିଛି ନ ନେଇ ତାଙ୍କୁ କିଛି ଦେବା । କିନ୍ତୁ ଏଠାରେ ସମାଜଠାରୁ ଆମେ ଅନେକ କିଛି ପାଇପାରୁଛୁ । ସମାଜର ଏହି ଋଣକୁ ସେବା ରୂପକ ଦାନ ମାଧ୍ୟମରେ ସୁଝିବାକୁ ହୋଇଥାଏ ।

ଶରୀରକୁ ପ୍ରତିଦିନ ଆମେ କ୍ଷୀଣ କରିଥାଉଁ । ମନ, ବୁଦ୍ଧି ଏବଂ ଇନ୍ଦ୍ରିୟଠାରୁ ଆମେ ଶକ୍ତି ପାଇ କାମ କରିଥାଉଁ । ଏହାର ବିକାଶ କରିବା ଉଚିତ । ବିକାରଗ୍ରସ୍ତ ଶରୀରକୁ ତପସ୍ୟା ମାଧ୍ୟମରେ ଶୁଦ୍ଧ କରାଯାଇଥାଏ ।

କେଉଁଭଳି କର୍ମ କରିବାକୁ ହେବ ଶ୍ରୀକୃଷ୍ଣ ଯଜ୍ଞ, ଦାନ, ତପସ୍ୟା ମାଧ୍ୟମରେ ବୁଝାଇ ଅଛନ୍ତି । ଏହା ସରସ, ସୁନ୍ଦର ସଂସାର, ସମାଜ ଓ ଶରୀର ଗଠନରେ ସହାୟତା ହୁଏ । ଯଜ୍ଞ, ଦାନ, ତପ ଏସବୁ ବାହ୍ୟ ଅଟେ । ମନରେ ଶୁଦ୍ଧତା ରଖି ଯଜ୍ଞ କରୁ, ଦାନ ଦେଉ ଏବଂ ତପସ୍ୟା ମଧ୍ୟ କରିଥାଉଁ, କିନ୍ତୁ ଅନେକ ବ୍ୟକ୍ତି ଲୋକ ଦେଖାଣିଆ ଯଜ୍ଞ କରନ୍ତି, ଦାନ ଦିଅନ୍ତି ଏବଂ ତପସ୍ୟା ମଧ୍ୟ କରନ୍ତି । ଏଇଥିପାଇଁ ଭଗବଦ୍ ଗୀତାରେ ଶ୍ରଦ୍ଧା ଉପରେ ବିଶେଷ ଗୁରୁତ୍ୱ ପ୍ରଦାନ କରାଯାଇଅଛି । ଯାହା କିଛି କରିବାକୁ ହେବ ତାହା ଉପର ଠାଉରିଆ, ଲୋକ ଦେଖାଣିଆ ନହୋଇ ହୃଦୟ ଭିତରେ ଶ୍ରଦ୍ଧା ଭାବେ କରିବାକୁ ଭଗବଦ୍ ଗୀତା ପଥ ପ୍ରଦର୍ଶକ ରୂପେ ଇଙ୍ଗିତ ଦେଉଅଛି । ଆନ୍ତରିକତାର ସହ ଯଜ୍ଞ, ଦାନ ଏବଂ ତପସ୍ୟା କଲେ ତାହା ସତ୍ ହୋଇଥାଏ, କିନ୍ତୁ ଆନ୍ତରିକତାର ସହ ନକଲେ ଅସତ୍ ହୋଇ କ୍ଷତି ସାଧନ କରେ ।

ଏସବୁ ମୂଳରେ ଶିକ୍ଷାର ଗୁରୁତ୍ୱ ଅଛି । ଉପଯୁକ୍ତ ଗୁରୁ ବରଣ କରିବାକୁ ହେବ ଏବଂ ନିଜକୁ ନଚିକେତା ଭଳି ଶିଷ୍ୟ ହୋଇ ଯମରାଜ ଭଳି ଗୁରୁଙ୍କଠାରୁ ଶିକ୍ଷା ଲାଭ କରିବା ଉଚିତ । ଆଜିର ଶିକ୍ଷା ସେଭଳି ନାହିଁ । ସେଥିପାଇଁ ଯୁକ୍ତରାଷ୍ଟ୍ର ଆମେରିକାର ଏକ ପତ୍ରିକା ''National Parent Teacher''ରେ ଏପ୍ରିଲ୍ ୧୯୬୫ରେ ଏକ ସମାଲୋଚନା ସ୍ଥାନ ପାଇଥିଲା – ''Current education as that mysterious process where by information passes from the lecture notes of the Professor through the fountain pen and on to the note book of the student without passing through the mind of either''.

ପ୍ରାଚୀନ ଶିକ୍ଷା, ସଂସ୍କୃତ ଭାଷାର ପୁନରୁଦ୍ଧାର କରିବାକୁ ସେତେଟା ଆଗ୍ରହ ପ୍ରକାଶ ପାଉ ନଥିବାରୁ ଉପଯୁକ୍ତ ଶ୍ରଦ୍ଧା ମଧ୍ୟ ଲୋପ ପାଇଯାଉଅଛି । ମହାପୁରୁଷ ମନୁ ତାଙ୍କ ମନୁ ସ୍ମୃତିରେ କହିଛନ୍ତି :

"ଏତଦ୍ଦେଶ ପ୍ରସୂତସ୍ୟ ସକାଶାଦ ଗ୍ରଜନ୍ମନଃ
ସ୍ୱଂ ସ୍ୱଂ ଚରିତ୍ର ଶିକ୍ଷେରନ୍ ପୃଥିବ୍ୟାଃ ସର୍ବମାନବାଃ" ।

ପୁଣ୍ୟ ଭୂମି ଭାରତ । ସେ ତା'ରି କୋଳରେ ପାଳନ କରିଛି ଭଗବାନଙ୍କୁ ରାମ, କୃଷ୍ଣ ଏବଂ ନୃସିଂହ ରୂପରେ । ଆଜି ଆମେ କେବଳ ଭାରତ ମାତାର ପୂଜା କରିବା ପାଇଁ ଆଗଭର ହେଉଥିବା ବେଳେ ତା'ର ପ୍ରାଚୀନ ଭାଷା, ସଂସ୍କୃତିକୁ ଛାଡ଼ି ବିଦେଶୀ ଇଂରେଜ ଭାଷାକୁ ଆଦରି ନେଇଅଛୁ । କିନ୍ତୁ ଭାରତର ଯୋଗ୍ୟ ସନ୍ତାନ ଶ୍ରୀକୃଷ୍ଣଙ୍କ ମୁଖ ନିସୃତ ହୋଇ ମୁନି ଋଷିଙ୍କର ଲେଖନୀରେ ଅଳଙ୍କୃତ ହୋଇଥିବା ଭଗବଦ୍ ଗୀତା ପ୍ରତି ଆମର ଶ୍ରଦ୍ଧା ଲୋପ ପାଇଯାଇଛି । ତଥାପି ଯୁଗେ ଯୁଗେ ଭାରତ ବିଶ୍ୱରେ ପ୍ରସିଦ୍ଧି ଲାଭ କରି ରହିଛି;: ରହିଥିବ ମଧ୍ୟ । ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ସେହି ପଂକ୍ତିକୁ ଦୋହରାଇ କହିବା :

"ହେ ମୋର ଚିର ପୁଣ୍ୟ ତୀର୍ଥ ଜାଗରେ ଧୀରେ,
ଏହି ଭାରତର ମହା ମାନବର ସାଗର ତୀରେ ।"

ଗୀତାର ଅଠର ଭାଗ ଶ୍ରୀକୃଷ୍ଣଙ୍କ ମୁହଁରୁ ଶୁଣିଲା ପରେ ଅର୍ଜୁନଙ୍କ କ୍ଷତ୍ରିୟ ରକ୍ତ ଗରମ ହୋଇ ଉଠିଲା । କୌରବମାନଙ୍କଠାରୁ ଉପଯୁକ୍ତ ଶ୍ରଦ୍ଧା ପାଇପାରି ନଥିବାରୁ ପାଣ୍ଡବମାନଙ୍କ କଷ୍ଟ ଗୋଟି ଗୋଟି କରି ଆଖି ଆଗରେ ନାଚି ଉଠିଲା । ମାତା କୁନ୍ତୀଙ୍କର ବନବାସ ଯନ୍ତ୍ରଣା ଅର୍ଜୁନଙ୍କ ଅନ୍ତର ଭିତରେ ଉଙ୍କି ମାରିଲା । ସେ କୌରବମାନଙ୍କୁ ନିପାତ କରିବା ପାଇଁ ଗାଣ୍ଡିବ ଧରିବାକୁ ମନସ୍ଥ କରି ଶ୍ରୀକୃଷ୍ଣଙ୍କୁ କହିଲେ – "ହେ ଅଚ୍ୟୁତ ! ଆପଣଙ୍କ ଅନୁଗ୍ରହରୁ ମୋର ଭ୍ରମ ଦୂର ହୋଇଗଲା । ମୁଁ ଆତ୍ମ ଜ୍ଞାନ ବିଷୟକ ସ୍ମୃତି ଲାଭ କଲି । ଆପଣଙ୍କ ବଚନ ପାଳନ କରିବାକୁ ପ୍ରସ୍ତୁତ ଅଛି ।"

"ନଷ୍ଟୋମୋହଃ ସ୍ମୃତିର୍ଲବ୍ଧା ତ୍ୱତ୍ ପ୍ରସାଦାନ୍ମୟାଚ୍ୟୁତ
ସ୍ଥିତୋଽସ୍ମି ଗତ ସନ୍ଦେହଃ କରିଷ୍ୟେ ବଚନଂ ତବ ।"

---

ସଭାପତି,
କେନ୍ଦୁଝର ଜିଲ୍ଲାସ୍ତରୀୟ ଶିଶୁ ସାହିତ୍ୟ ସଂସଦ,
ସମ୍ପାଦକ, ରସଲୀଳା,
କେନ୍ଦୁଝର ।

# ଆଜିର ଶିକ୍ଷା ଓ ଶିଶୁ ଶିକ୍ଷାର ପୃଷ୍ଠଭୂମି

ଶ୍ରୀ ନରହରି ଉପାଧ୍ୟାୟ

ଭାରତବର୍ଷ ଏକ ପ୍ରାଚୀନ ଦେଶ । ଏହାର ପରମ୍ପରାଭିତ୍ତିକ ପ୍ରାଚୀନତା ନିର୍ଣ୍ଣୟ କରିବା ପାଇଁ ବୈଦେଶିକ ବିଶ୍ବଗଧାରା ପ୍ରଭାବିତ ଯାହାସବୁ ଐତିହାସିକ ମାନଦଣ୍ଡ ପ୍ରସ୍ତୁତ ସିଦ୍ଧାନ୍ତ ଏ ଯାବତ୍ କରାଯାଇଛି, ତାହା ବସ୍ତୁତଃ ବିସମ୍ବାଦିତ । ପ୍ରାଗ୍‌ବୈଦିକ ଯୁଗର କେଉଁ ସ୍ମରଣାତୀତ ଉତ୍ସରୁ ଚିରପ୍ରବାହବତୀ ଏ ଦେଶର ଅବ୍ୟାଡିଭବ୍ୟ ଦିବ୍ୟୋତ୍ତମା ସଂସ୍କୃତି । ତଦନୁରୂପ ଗଢିଉଠିଛି, ତା'ର କଳା–ସାହିତ୍ୟ–ବିଜ୍ଞାନ–ଦର୍ଶନମୂଳେ, ମୁଖ୍ୟତଃ ଶାସ୍ତ୍ରାନୁଶାସିତ୍ ଅଧ୍ୟାତ୍ମଭିତ୍ତିକ ଯଥା, ମାର୍ଜିତ ଜନଜୀବନ ଏବଂ ନୀତି–ଶୃଙ୍ଖଳାବଦ୍ଧ ସମୁନ୍ନତ ସାମାଜିକ ପରମ୍ପରା । ଆଦିମ ଆର୍ଯ୍ୟ ଅଧ୍ୟୁଷିତ ଏ ଦେଶର ବେଦମୂଳ ସାରସ୍ୱତ ସୃଷ୍ଟି ଅତି ସମୃଦ୍ଧ । ବେଦରୁ ପର୍ଯ୍ୟାୟକ୍ରମେ ପୁରାଣ–ଦର୍ଶନ, ଉପନିଷଦ, ଧର୍ମଶାସ୍ତ୍ର, ନୀତିଶାସ୍ତ୍ର ଆଦି ସାଧୁ ଶାସ୍ତ୍ରର ବିପୁଳ ଭଣ୍ଡାର ଗଢିଉଠିଛି । ଏ ସବୁ ଏକ ସାମଗ୍ରିକ ସାହିତ୍ୟ ସୃଷ୍ଟିର ଅଙ୍ଗ–ଉପାଙ୍ଗ ରୂପେ ପରିପୁଷ୍ଟ । ଯୁଗ ଯୁଗର ଆର୍ଯ୍ୟ ସଂସ୍କୃତି ବିକାଶ ମାର୍ଗରେ ପ୍ରତି ବିଭାଗ ଏକ ଅନ୍ୟର ପରିପୂରକତା ରଖିଛି । ସାମୁହିକ ସମାଜକୁ ଶାସ୍ତ୍ରମାନେ ଶୁଣାଇଛନ୍ତି ସ୍ୱସ୍ୱ କଲ୍ୟାଣମୟୀ ବାର୍ତ୍ତା । ଶିକ୍ଷାମୂଳକ ରଚନା ଏବଂ ତା'ର ଅଧ୍ୟୟନ–ଅଧ୍ୟାପନ କ୍ଷେତ୍ରରେ କେବଳ ଗ୍ରହଣକ୍ଷମ ପାତ୍ର ଏବଂ ଉପଯୁକ୍ତ ଗୁରୁ ବା ଉପାଧ୍ୟାୟର ବିଚାର ମାତ୍ର ଥିଲା । ଦେଶ, ସମ୍ପ୍ରଦାୟ, ଜାତି–ଗୋତ୍ର, ଆଭିଜାତ୍ୟ–ଅପଜାତ୍ୟ ମାନଦଣ୍ଡରେ ଏ ସଂସ୍କୃତି କେବେ ଭେଦ–ଚିନ୍ତନକୁ ପ୍ରଶ୍ରୟ ଦେଇ ନାହିଁ, ଯଦିଓ କେତେକ ପକ୍ଷବଗ୍ରାହୀ ମହଲରୁ ସେପରି ଅଭିଯୋଗ କେବେ କେବେ ଶୁଣାଯାଏ । ଆଜିକାଲି ଶିକ୍ଷା କ୍ଷେତ୍ରରେ ଯେପରି ସାମଗ୍ରିକ ସାହିତ୍ୟକୁ ବିଭାଗୀକରଣ ଦ୍ୱାରା ଶିଶୁ ସାହିତ୍ୟ, ପ୍ରୌଢ ସାହିତ୍ୟ, ଲୋକ ସାହିତ୍ୟ, ସମ୍ଭ୍ରାନ୍ତ ସାହିତ୍ୟ ଇତର ସାହିତ୍ୟ ଆଦି ଭିନ୍ନ ଭିନ୍ନ ଯୋଗ ରୂଢ ସଂଜ୍ଞା ପ୍ରୟୋଗରେ ଶ୍ରେଣୀ ସ୍ୱାତନ୍ତ୍ର୍ୟ ସମ୍ପାଦନର ଉତ୍ତରୋତ୍ତର ସମୁତ୍ସାହ ଉଦ୍ୟମ ଚାଲିଛି ଏବଂ ସ୍ଥାୟୀଭାବେ ପ୍ରତିଷ୍ଠିତ କରାଯାଇଛି, ପୂର୍ବେ ପ୍ରାଚୀନ ପରମ୍ପରାରେ କେବେହେଁ ସେପରି ଚିନ୍ତା–ଚେତନାର ଅବକାଶ ନଥିଲା । ଶିକ୍ଷା ଥିଲା ସମନ୍ୱିତ ଓ ସାର୍ବଜନୀନ । ଶିକ୍ଷଣୀୟ ବସ୍ତୁ ଥିଲା ବେଦମନ୍ତ୍ର, ପୁରାଣ କଥା, ଧର୍ମଶାସ୍ତ୍ରୀୟ ନିର୍ଦ୍ଦେଶନା, ନୀତିଶାସ୍ତ୍ରୀୟ ଜ୍ଞାନର ଉପଦେଶାବଳୀ ଇତ୍ୟାଦି । ଉଦ୍ଦେଶ୍ୟ ଥିଲା ଚରିତ୍ର ଗଠନ, ବ୍ୟକ୍ତିତ୍ୱ ଗଠନ, ସମାଜ ତଥା ରାଷ୍ଟ୍ରର ସୁନାଗରିକ ସୃଷ୍ଟି । ଏହି ପୃଷ୍ଠଭୂମି ଉପରେ ଆମେ ଆଲୋଚନା କରିବା ଆମ ଦେଶ ଶିଶୁ ସାହିତ୍ୟର ସ୍ୱରୂପ ଓ ପାରମ୍ପରିକତା ।

## ସୁପ୍ରାଚୀନ ଚେତନା :

'ଶିଶୁ ସାହିତ୍ୟ' : ଅଭିନବ ସୃଷ୍ଟି ନୁହେଁ; ଏକ ସୁପ୍ରାଚୀନ ଚେତନାର ନବୀନ ଅଭିବ୍ୟକ୍ତି ମାତ୍ର । ସନ୍ଧାନିବାକୁ ହେବ, ଏହାର ଉଦ୍ଭବ–ବିକାଶ ସୂତ୍ର କେଉଁଠି ? ଚିତ୍ତାକର୍ଷକ ଜ୍ଞାନଗର୍ଭ ଗ୍ରନ୍ଥ ରଚନାର କାଳକ୍ରମିକ କଳାତ୍ମକ ବିକାଶ ହିଁ ସାହିତ୍ୟର ସୃଷ୍ଟି ପରମ୍ପରା । ସୃଷ୍ଟିବୀଜ ହିତୋପଲବ୍ଧି । ଏହି ଲବ୍ଧବୀଜ ସହୃଦୟ ମନୋଭୂମିରେ ସମନ୍ୱିତ ହେଲେ ଚୈତନ୍ୟ ସ୍ପନ୍ଦନର ଯେଉଁ ଦିବ୍ୟାନୁଭୂତି ଜାତ ହୁଏ, ବୈଦିକ ପରିଭାଷାରେ ତାହା 'ଭଦ୍ର ଭାବନା', ଯାହା କି ଆସ୍ୱାଦିତାସ୍ୱ ତଥା ଜଗଦ୍ଧିତାୟ । ଅନ୍ତର୍ଭୂତ ଭଦ୍ର ଭାବନାର ବ୍ୟକ୍ତରୂପ ବେଦ । ବିଶ୍ୱର ଅପୌରୁଷେୟ ଆଦି ସାରସ୍ୱତ ସୃଷ୍ଟି ଭାବରେ ସାର୍ବଭୌମ ମର୍ଯ୍ୟାଦାପ୍ରାପ୍ତ ବେଦ ହିଁ ସାହିତ୍ୟର ଆଦିମ ପରିପ୍ରକାଶ । ତାହାର ଅନନ୍ତଗର୍ଭ ଧାରରେ ପ୍ରବାହିତ ଶିଶୁ ସାହିତ୍ୟର ସମୁଜ୍ଜ୍ୱଳ ଅନ୍ତଃସ୍ରୋତ । ସୁତରାଂ ବେଦ ହିଁ ଶିଶୁ ସାହିତ୍ୟର ଆଦି ଉତ୍ସ । ଆଉ ଟିକିଏ ଗଭୀର ଅନୁଧ୍ୟାନ ପୂର୍ବକ ବୈଦିକୀ ଚେତନା ଓ ଶିକ୍ଷା ପରମ୍ପରାକୁ ଅନୁଶୀଳନ କଲେ, ମୋଟାମୋଟି ଭାବେ ବେଦକୁ ତଦାନୀନ୍ତନ ଯୁଗଧର୍ମାନୁମତ ଶିଶୁ ସାହିତ୍ୟ କହିବା ଅସଙ୍ଗତ ଅବା ଅତ୍ୟୁକ୍ତି ଦୁଷ୍ଟ ହେବ ନାହିଁ । ଏହା ପ୍ରାୟ ସର୍ବବାଦୀ ସମ୍ମତ, ଦ୍ରଷ୍ଟା କଣ୍ଠନିଃସୃତ ବୈଦିକ–ମନ୍ତ୍ରଭାରତୀ ବହୁକାଳ ଧରି ଲିପିଗ୍ରଥିତ ଗ୍ରନ୍ଥମନ୍ଦିର ମଣ୍ଡନ କରିନଥିଲେ, ଥିଲେ ଶ୍ରୁତିରେ ଓ ସ୍ମୃତିରେ । ସେ ହେତୁ ରୁଢି ପ୍ରଯୁକ୍ତିରେ ବେଦ 'ଶ୍ରୁତି' ସଂଜ୍ଞା ବହନକରେ । ବୈଦିକ ଋଷିମାନଙ୍କର ଶିଶୁ ଦାୟାଦମାନଙ୍କୁ ଛନ୍ଦେ ଛନ୍ଦେ ବେଦମନ୍ତ୍ର ପ୍ରଦାନ କରାଯାଉ ଥିଲା ଏବଂ ପ୍ରଖର ଶ୍ରୁତିଧର ଶିଶୁ ଶିଷ୍ୟଗଣ ତାହାକୁ ଶୁଣି ଶୁଣି ମନେ ରଖୁଥିଲେ । ଏହିପରି ପୁରୁଷାନୁକ୍ରମେ ବେଦର ସଂରକ୍ଷଣ ଓ ପ୍ରସାରଣ ପ୍ରକ୍ରିୟା ଚାଲିଆସୁଥିଲା । ମାନବୀୟ ପ୍ରକୃତି ଏବଂ ସାମାଜିକ ଚଳଣିର ଧାରା ପରିବର୍ତ୍ତନ ଏକ ଚିରନ୍ତନୀ ପ୍ରକ୍ରିୟା । ଯେହେତୁ ନିଷ୍ଠାପର ଶାସ୍ତ୍ରାଚାର୍ଯ୍ୟଗଣ ସେଥିପାଇଁ କାଳର କୁଟିଳଗତିକୁ ଦାୟୀ କରନ୍ତି । ଏହି ପରିବର୍ତ୍ତନ ଧାରାରେ, କେଉଁ ଅଜ୍ଞାତ ଦୂର ଅତୀତରେ ବେଦବ୍ରହ୍ମ ହୋଇଗଲେ ଗ୍ରନ୍ଥବଦ୍ଧ । ଶିକ୍ଷା ପ୍ରଣାଳୀର ତଦନୁରୂପ ପରିବର୍ତ୍ତନ ଘଟିବା ଅନିବାର୍ଯ୍ୟ ସେ ପର୍ଯ୍ୟନ୍ତ ଶିକ୍ଷା ଥିଲା ଅଣାନୁଷ୍ଠାନିକ ।

## ଗୁରୁ ପ୍ରଦପ୍ରାନ୍ତରେ ଶିକ୍ଷା :

ଏହାପରେ ବୈଦିକଯୁଗ ବିଭାଗ ପରମ୍ପରାରେ ଆସିଲା ଉପନିଷଦ୍ ଯୁଗ । ପ୍ରବର୍ତ୍ତିତ ହେଲା ଆନୁଷ୍ଠାନିକ ଶିକ୍ଷା

ବ୍ୟବସ୍ଥା । ଆରଣ୍ୟ ସଂସ୍କୃତିର ବିଶେଷ ଅଙ୍ଗରୂପେ, କୋଳାହଳଶୂନ୍ୟ ନିର୍ଜନ ଅରଣ୍ୟ ପ୍ରଦେଶର କାନ୍ତ-ପ୍ରଶାନ୍ତ ପରିବେଶ ମଧ୍ୟରେ ଗୁରୁଗୃହ ବା ଗୁରୁକୁଳ ଆଶ୍ରମମାନ ପ୍ରତିଷ୍ଠିତ ହେବାକୁ ଲାଗିଲା । ମନ୍ତ୍ରଦ୍ରଷ୍ଟା ମୁନି-ଋଷିଗଣ ଅପେକ୍ଷାକୃତ କଠିନ ବେଦମନ୍ତ୍ରର ନିର୍ଯ୍ୟାସ ବା ସାରାଂଶ ଆହରଣ କରି ବହୁ ସଂଖ୍ୟକ ସହଜ ଶିକ୍ଷା ଉପଯୋଗୀ ବିବିଧ ଜ୍ଞାନ ବିଜ୍ଞାନ ଗର୍ଭକ ଉପନିଷଦମାନ ପ୍ରଣୟନ କଲେ । ସେହି ତାପସ ଅଧ୍ୟାପୀ ଗୁରୁମାନଙ୍କ ଅଧ୍ୟକ୍ଷତାରେ ଗୁରୁକୁଳ ଶିକ୍ଷା ପରମ୍ପରାର ସୂତ୍ରପାତ ହେଲା । ଆଧୁନିକ 'ଶିଶୁଶିକ୍ଷା', 'ଶିଶୁ ସାହିତ୍ୟ', 'ଶିଶୁଚିତ୍ର' ଆଦି ଯୋଗରୂଢ଼- ସଂଜ୍ଞା ପ୍ରୟୋଗ ପରିପ୍ରେକ୍ଷୀରେ ଗୁରୁକୁଳ ବ୍ୟବସ୍ଥାକୁ ସ୍ଥୂଳତଃ ଶିଶୁ କିଶୋର-ଶିକ୍ଷାନୁଷ୍ଠାନ କୁହାଯାଇ ପାରେ । ପରନ୍ତୁ, ଏଥିରେ ବୋଧ ବିରୋଧର ଅବକାଶ ଘଟେ । ମନୁଷ୍ୟର ଜୀବନକାଳ ଯେଉଁ ବିଭିନ୍ନ ଅବସ୍ଥା ଦେଇ ଗତିକରେ ତାହାର ଏକ ସଂକ୍ଷିପ୍ତ ବିବରଣୀ ଏଠାରେ ଦେଲେ, ପ୍ରମାଦର ତାତ୍ପର୍ଯ୍ୟ ବେଶ୍ ବୁଝିହେବ ।

କାଳ ପରିମିତିରେ ଏକ ଅହୋରାତ୍ର ଯେପରି ଅଷ୍ଟକାଳ ବା ଆଠଟି ପ୍ରହରରେ ବିଭକ୍ତ, ଗୋଟିଏ ପୂର୍ଣ୍ଣାୟୁଃ ମନୁଷ୍ୟର ଜୀବନ-କାଳ ସେହିପରି ଅବସ୍ଥା ଭେଦରେ ଅଷ୍ଟଧା ବିଭକ୍ତ । ଭ୍ରୂଣତ୍ୱରୁ ଆରମ୍ଭ ହୁଏ ଜୀବସତ୍ତା । ପ୍ରଥମେ ଜନନୀ ଜଠରରେ ଭୋଗହୁଏ ଭ୍ରୂଣାବସ୍ଥା । ମାତୃ ଗର୍ଭରୁ ,ସନ୍ତାନ ରୂପେ ଭୂମିଷ୍ଠ ହୋଇବାପରେ ସେ ଲାଭକରେ ତାହାର ଦ୍ୱିତୀୟାବସ୍ଥା ଶିଶୁତ୍ୱ । ଜନ୍ମରୁ ଚାରିବର୍ଷଯାଏ ଶୈଶବକାଳ । ସେତେବେଳେ ସେ ଥାଏ ଅପୌଗଣ୍ଡ ଅର୍ଥାତ୍ ଅବୋଧ, ଅସମର୍ଥ, ସ୍ତନ୍ୟପ ମାତ୍ର । ପୌଗଣ୍ଡ ପ୍ରାପ୍ତି ତୃତୀୟାବସ୍ଥା । ପୌଗଣ୍ଡର ଭୋଗକାଳ ପାଞ୍ଚରୁ ଦଶବର୍ଷ । ଚତୁର୍ଥାବସ୍ଥା କୈଶୋରଃ ନିରୂପିତ ବୟସ ସୀମା ଏଗାରରୁ ପନ୍ଦରବର୍ଷ । ଏଠାରେ ସୂଚାଇ ଦିଆଯାଇପାରେ, କେତେକ ଆଭିଧାନିକ ଉଲ୍ଲେଖନରୁ ଶୈଶବ, ପୌଗଣ୍ଡ ଓ କୈଶୋରାଦି ତିନି ଭିନ୍ନ ଭିନ୍ନ ଅବସ୍ଥାର ବୟସ ସୀମା ପ୍ରଦର୍ଶନରେ ଏପରି ପ୍ରମାଦପୂର୍ଣ୍ଣ ତାରତମ୍ୟ ପରିଲକ୍ଷିତ ହୁଏ, ଯାହା କି ପୌଗଣ୍ଡ ଓ କୈଶୋର ଦୁଇ ଅବସ୍ଥାକୁ ସତ୍ତାହୀନ କରି ଠିକ୍ ଶୈଶବ ଅନ୍ତେ ଯୌବନର ଉପସ୍ଥିତି ପ୍ରମାଣ କରେ । ଆମର କାବ୍ୟ ପରମ୍ପରାକୁ ଲକ୍ଷ୍ୟ କରାଯାଉ । କବି ଅଭିମନ୍ୟୁ ଗାଇଛନ୍ତି-

"କୃଷ୍ଣ ପଉଗଣ୍ଡ କାଳ ଅନ୍ତରେ
ନବକିଶୋର ବୟସ ଆଗତରେ"(୨)

ବାଲ୍ୟ ଓ ପୌଗଣ୍ଡ ଅବସ୍ଥାରେ ଅସୁର-ମାରଣାଦି ଲୀଳା ଅନ୍ତେ କୃଷ୍ଣ ଯୌବନପୂର୍ବ ନବକୈଶୋର ଅବସ୍ଥା ପ୍ରାପ୍ତ ହୋଇ ଅଛନ୍ତି । ଯୌବନ ଜୀବନର ପଞ୍ଚମାବସ୍ଥା । ଏହାର ବୟଃକ୍ରମ ଷୋହଳରୁ ତିରିଶବର୍ଷ । ତାହାପରେ ପୌଢ଼ାବସ୍ଥା, ଯୌବନ ଓ ବାର୍ଦ୍ଧକ୍ୟର ମଧ୍ୟମସ୍ଥି ବୟସ; ତିରିଶ ପରବର୍ତ୍ତୀ ପଞ୍ଚଚାଳିଶ ବା ପଚାଶବର୍ଷ ମଧ୍ୟରେ । ଏହି ମଧ୍ୟମାବସ୍ଥା ହିଁ ମନୁଷ୍ୟ ଜୀବନର ପୂର୍ଣ୍ଣାବସ୍ଥା । ମଧ୍ୟାବସ୍ଥା ଅତିକ୍ରାନ୍ତ ପରେ ଆସେ ବାର୍ଦ୍ଧକ୍ୟ । ଅତିବୃଦ୍ଧ ଅଷ୍ଟମାବସ୍ଥା ଜରା, ଯାହା କି ଅଶୀତି ପରବର୍ତ୍ତୀ କାଳ ।

## ଶୈଶବରୁ ଯୌବନ :

ପ୍ରସଙ୍ଗାନୁକ୍ରମେ ଏ ଯେଉଁ ଜୀବନ-କାଳ ବିଷୟକ ଆଲୋଚନା କରାଗଲା,ଲକ୍ଷ୍ୟ ହେଉଛି ଶୈଶବର ସୀମା ପରିବ୍ୟାପ୍ତି ଅବଗତ ହେବା । ଜନ୍ମରୁ ଚାରିବର୍ଷ ଭିତରେ ଯଦି ଶୈଶବକୁ ସୀମାବଦ୍ଧ କରାଯାଏ, ଶିଶୁଶିକ୍ଷା, ଶିଶୁ ସାହିତ୍ୟ ପରି ଅଧୁନା ବହୁଳ ପ୍ରଚଳିତ ଏବଂ ଯଥେଷ୍ଟ ଗୁରୁତ୍ୱ ପ୍ରାପ୍ତ ଯୋଗରୂଢ଼ ପ୍ରୟୋଗଗୁଡ଼ିକ ଅସଙ୍ଗତ ବୋଧ ହେବ । କାରଣ ଆପ୍ତୋକ୍ତିରେ- "ଶିଶୌ ନାସୀଦ୍ ବାକ୍ୟଂ" ଅର୍ଥାତ୍ ଶିଶୁ ଦଶାରେ ଯେତେବେଳେ ସ୍ପଷ୍ଟ ଭାଷା ନାହିଁ, ବୋଧଶକ୍ତି ନାହିଁ, ତାହାପାଇଁ ସାହିତ୍ୟର ପ୍ରୟୋଜନୀୟତା କେଉଁଠି ? ସେ ସ୍ତରରେ ଶିଶୁଶିକ୍ଷାକୁ ଆନୁଷ୍ଠାନିକ କରାଯାଇପାରେ ଅବା କିପରି ? ଶିଶୁର ଆଦ୍ୟଗୁରୁ ତା'ର ମା' । ଦ୍ୱିତୀୟରେ ବାପା, ଭାଇ, ଭଉଣୀ, ବୁଢ଼ୀମା, ଆଈମା' ଇତ୍ୟାଦି । ଏବେ ଇଂରାଜୀମାଧ୍ୟମ ଶିକ୍ଷା ବ୍ୟବସ୍ଥାରେ ଶିଶୁମାନଙ୍କର ନର୍ସରିସ୍କୁଲ, ଶିକ୍ଷାକୁ ଆନୁଷ୍ଠାନିକ ରୂପ ଦିଆଗଲାଣି । ପରନ୍ତୁ ଭାରତୀୟ ଚଳଣି ପରମ୍ପରାରେ ଶିଶୁଶିକ୍ଷାର କ୍ଷେତ୍ର ଥିଲା ସମ୍ପୂର୍ଣ୍ଣ ପାରିବାରିକ ବେଷ୍ଟନୀ । କୌଣସି ପ୍ରକାର ଆନୁଷ୍ଠାନିକ ଶିକ୍ଷାଥିଲା ଚିନ୍ତାବହିର୍ଭୂତ । ତେବେ ଆଲୋଚିତ ସମସ୍ୟାର ସମାଧାନ କଣ ?

ପ୍ରଶ୍ନଟି ଅବଶ୍ୟ ସମାଧେୟ । ପୁରାଣ, ଜ୍ୟୋତିଷାଦି ଶାସ୍ତ୍ର ଓ କାବ୍ୟ ସାହିତ୍ୟରେ ବ୍ୟାଖ୍ୟାତ ବିବିଧ ସନ୍ଧିକାଳର ଉଲ୍ଲେଖ ଦେଖାଯାଏ, ଯଥା-କନ୍ୟା ସନ୍ଧିକାଳ, ଯୁଗ ସନ୍ଧି, ପର୍ବ ସନ୍ଧି, ବୟଃ ସନ୍ଧି-ଇତ୍ୟାଦି । ଗତ ଓ ଆଗତ, ଏହି ଦୁଇ କାଳ ବା ଅବସ୍ଥାର ମଧ୍ୟବର୍ତ୍ତୀକାଳ ହିଁ ସନ୍ଧି କାଳ ; ଯେପରି ଅମାବାସ୍ୟା ବା ପୂର୍ଣ୍ଣିମୀ ଏବଂ ପ୍ରତିପଦର ମଧ୍ୟକାଳ 'ପର୍ବସନ୍ଧି' ଭାବରେ ନିରୂପିତ । ସେହିପରି ବାଲ୍ୟର ଶେଷ ଏବଂ ଯୌବନ ଉପକ୍ରମର ମଧ୍ୟକାଳ 'ବୟଃ ସନ୍ଧି' ଅଭିହିତ । ସିଦ୍ଧାନ୍ତତଃ ବୟସ ଗଣନାରେ ପଞ୍ଚଦଶବର୍ଷ ପରିପୂର୍ତ୍ତି ଏବଂ ଷୋଡ଼ଶ ବର୍ଷାରମ୍ଭରେ ଜୀବନରେ ଯୌବନ ପଦାର୍ପଣ କରେ । ସୁତରାଂ ପୂର୍ବାଲୋଚିତ ସୂକ୍ଷ୍ମଗଣନାକୁ ବାଦ ଦେଇ, ସ୍ଥୂଳ ହିସାବରେ, ଗର୍ଭସ୍ଥ ଭ୍ରୂଣାବସ୍ଥାବଧି ପନ୍ଦରବର୍ଷ ଯାବତ୍ ସମୟର ବ୍ୟାପ୍ତି 'ବାଲ୍ୟକାଳ' ରୂପେ ପରିଗଣିତ ।

ଅମରକୋଷଃ ବ୍ୟାଖ୍ୟାନୁସାରେ-

"ଭ୍ରୂଣୋଽର୍ଭକେ"ଠ (୨), ଅର୍ଥାତ୍ ଭ୍ରୂଣ ମଧ୍ୟ 'ଅର୍ଭକ'ବା ବାଳକ ସଂଜ୍ଞାବାଚୀ । ପୁନଶ୍ଚ ବାଲ୍ୟ ଓ ଶୈଶବ୍ୟ ସମାର୍ଥ-ସମପର୍ଯ୍ୟାୟବାଚୀ ଶବ୍ଦ ; ପ୍ରମାନ-"ଶିଶୁତ୍ୱଂ ଶୈଶବଂ ବାଲ୍ୟଂ (୩) ଭକ୍ତକବି ଦୀନକୃଷ୍ଣ ଦାସ କୃଷ୍ଣଙ୍କର ସମଗ୍ର ଗୋପ-ମଥୁରା ଲୀଳାକୁ 'ବାଲ୍ୟଲୀଳା' ରୂପେ ବର୍ଣ୍ଣନା କରି ଅଛନ୍ତି । ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ, ବାଲ୍ୟକାଳ ଭିତରେ ଭ୍ରୂଣାବସ୍ଥା, ଶୈଶବ, ପୌଗଣ୍ଡ ଓ କୈଶୋରାଦି ଜୀବନର ଚାରୋଟି ପ୍ରଥମାବସ୍ଥା ଭୋଗ ହେଉଛି । ଏହି କାଳଟି ବାସ୍ତବରେ ନର ଜୀବନର ଅନାହତ, ଅନାସକ୍ତ, ଅନାବିଳ ଓ ଅବିକଳ ସମୟ ; ତେଣୁ ବାଲ୍ୟ ଶିକ୍ଷାର ପ୍ରଶସ୍ତ ଅବସର । ଏ କ୍ଷେତ୍ରରେ ଏକ ସ୍ୱାଭାବିକ ସମ୍ଭାବ୍ୟ ପ୍ରଶ୍ନ ଯେ, ଗର୍ଭସ୍ଥ ଭ୍ରୂଣାବସ୍ଥାର ଶିକ୍ଷାଦାନ ବା ଗ୍ରହଣ କିପରି ସମ୍ଭବ ? ଅବଶ୍ୟ ସମ୍ଭବ । ଆମର ଶାସ୍ତ୍ର-ପୁରାଣାଦିରେ ଚମତ୍କାର ଦୃଷ୍ଟାନ୍ତର ଅଭାବ ନାହିଁ । ଗର୍ଭରେ ଥିବା ଅବସ୍ଥାରେ ବାମଦେବ ଋଷି ବ୍ରହ୍ମଜ୍ଞାନ ପ୍ରାପ୍ତ ହୋଇ ଥିଲେ (୪) । ମହାଭାରତ ଯୁଗର ବାଳବୀର ଅଭିମନ୍ୟୁ ମାତୃଗର୍ଭରେ ଥାଇ ପିତା ଅର୍ଜୁନଙ୍କ ବକ୍ତାନରୁ ଜଟିଳ ଚକ୍ରବ୍ୟୂହଭେଦ କୌଶଳ ଅବଗତ ହୋଇଥିଲେ । ମାତା ସୁଭଦ୍ରାଙ୍କର ନିଦ୍ରାବିଷ୍ଟତା

ହେତୁ ନିମ୍ନମାନ କୌଶଳ ଶୁଣିପାରି ନଥିବାରୁ ନୃଶଂସ ହତ୍ୟାର ଶିକାର ହେଲେ । ମହାଭାଗବତ ଶୁକମୁନି ମାତୃଗର୍ଭରେ ଗଭୀର ତତ୍ତ୍ୱଜ୍ଞାନ ଲାଭ କରିଥିବା ଅନ୍ୟତମ ଜାଜ୍ୱଲ୍ୟମାନ ପୌରାଣିକ ପ୍ରମାଣ । ଶିଶୁର ଅଲୌକିକ ଶକ୍ତି ଶୀର୍ଷକ ବହୁ ବୃତ୍ତାନ୍ତ ବେଳେ ବେଳେ ସମ୍ବାଦପତ୍ର- ପତ୍ରିକାଦି ମାଧ୍ୟମରେ ଆମ ଦୃଷ୍ଟିକୁ ଆସେ । କେତେକଙ୍କୁ ବିଶ୍ୱାସକରି ନ ହେଲେ ବି ନିରାଟ ସତ୍ୟ । ସୁସନ୍ତାନ ପ୍ରସବିନୀ ହେବା ନିମନ୍ତେ ଗର୍ଭବତୀ ସ୍ତ୍ରୀକୁ ମହତ୍ ଚିନ୍ତନ, ସଦାଚରଣ ଏବଂ ପୁରାଣାଦି ସଦ୍‌ଗ୍ରନ୍ଥ ଶ୍ରବଣ ପଠନ ପାଇଁ ଆମ ଶାସ୍ତ୍ର ସମୂହ ବହୁ ସାଧୁ ଉପଦେଶ ଦେଇଅଛନ୍ତି । ମାତାର ଚିନ୍ତନ ଓ କର୍ମଧର୍ମାନୁଚରଣର ଅନୁରୂପ ପ୍ରଭାବ ଗର୍ଭସ୍ଥ ସନ୍ତାନ ଉପରେ ପଡିବା ସମ୍ପୂର୍ଣ୍ଣ ବିଜ୍ଞାନ ସମ୍ମତ । "ଯାହା ନାହିଁ ବାଳକାଳେ, ତାହା ନାହିଁ କାଳେକାଳେ", ଉକ୍ତିଟି ଗ୍ରାମୀଣ ହେଲେ ହେଁ, ତାତ୍ପର୍ଯ୍ୟପୂର୍ଣ୍ଣ । ଅଜାତଶ୍ମଶ୍ରୁ ଶିଶୁର ମେଧା ବା ପ୍ରତିଭା ବିକାଶର କାଳ ହିଁ ଶୈଶବ । ଅତଏବ ପନ୍ଦର ବର୍ଷଯାଏ ବୟସର ବାଳକ-ବାଳିକାମାନଙ୍କ ପଠନ ପାଠନ ପାଇଁ ଉଦ୍ଦିଷ୍ଟ ଏବଂ ନିପୁଣ ବୟସ୍କମାନଙ୍କ ଦ୍ୱାରା ସୃଷ୍ଟ ସାହିତ୍ୟକୁ ଋଢ଼ୋକ୍ତିରେ 'ଶିଶୁ ସାହିତ୍ୟ' ମାନ୍ୟତା ଦେବା ସର୍ବତୋଭାବେ ସମୀଚୀନ ।

ସମ୍ପ୍ରତି ଆମେ ଉପନିଷଦ୍ ଯୁଗର ଆରଣ୍ୟ ଶିକ୍ଷା- ସଂସ୍କୃତି ପରିଧିକୁ ଆସିବା । ସେ କାଳର ଗୁରୁକୁଳ ବାନପ୍ରସ୍ଥୀ ଆଶ୍ରମଗୁଡ଼ିକ ଅତି ସୁବ୍ୟବସ୍ଥିତ ଆଦର୍ଶ ଶିକ୍ଷାୟତନରୂପେ ପ୍ରତିଷ୍ଠା ଲାଭକରିଥିଲା । ସାଧାରଣତଃ ଉପନୟନ ସଂସ୍କାର ପରେ ପଞ୍ଚମରୁ ଅଷ୍ଟମବର୍ଷ । ବୟସର ବିଦ୍ୟାର୍ଥୀଙ୍କୁ ସେଥିରେ ପ୍ରବେଶ କରାଯାଉଥିଲା । ସ୍ୱତନ୍ତ୍ର ସ୍ତ୍ରୀଶିକ୍ଷା ବ୍ୟବସ୍ଥା ପ୍ରାୟତଃ ନଥିଲା । ସହାଧ୍ୟୟନ ଥିଲା ପ୍ରଚଳିତ ପଦ୍ଧତି । ଶିକ୍ଷା ସମାପନାନ୍ତେ ସମାବର୍ତ୍ତନ ସମ୍ପନ୍ନ ନହେବାଯାଏ ଶିକ୍ଷାର୍ଥୀ-ଶିକ୍ଷାର୍ଥିନୀ ସମୂହ କଠୋର ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରୁଥିଲେ । ତେଣୁ ଚରିତ୍ର ସ୍ଖଳନର ଆଶଙ୍କା ବା ଅବକାଶ ପ୍ରାୟତଃ ନଥିଲା । ପରସ୍ପର ଭ୍ରାତୃଭଗ୍ନୀଭାବର ମମତା ପ୍ରାଚୁର୍ଯ୍ୟ ଏବଂ ଗଭୀର ସ୍ନେହ ସୌହାର୍ଦ୍ଦ୍ୟପୂର୍ଣ୍ଣ ପବିତ୍ର ପରିବେଶ ମଧ୍ୟରେ ନିଜ ନିଜର ପଠନ, ସାଧନାଦି କର୍ମସମ୍ପାଦନ ସୁଷ୍ଠୁରୂପେ କରୁଥିଲେ । ସେ ଯୁଗର ଗୁରୁ ଥିଲେ ସଦ୍ ଗୁରୁ ; ପିତୃପ୍ରତିମ ; ଶିଷ୍ୟବତ୍ସଳତାର ସାକ୍ଷାତ୍ ପ୍ରତିମୂର୍ତ୍ତି । ଗୁରୁ-ଶିଷ୍ୟଙ୍କ ମଧ୍ୟରେ ଥିଲା ଏକାତ୍ମତା । ପରସ୍ପର ଦ୍ୱେଷହୀନ ଓ ନିବିଡ଼ ସୌହାର୍ଦ୍ଦ୍ୟପୂର୍ଣ୍ଣ ସୁସମ୍ପର୍କ- ରକ୍ଷାପୂର୍ବକ ଉଭୟ ସହାବସ୍ଥାନର ଶାନ୍ତିମୟ ପରିବେଶ କାମନାରେ କିପରି ଐଶୀ ଶୁଭାଶିଷ ଭିକ୍ଷାକରି ସମବେତ ଉଦାତ୍ତ କଣ୍ଠସ୍ୱର ତୋଳୁଥିଲେ, ଗୋଟିଏ ଉପନିଷଦୀୟ ଶାନ୍ତିମନ୍ତ୍ର ପାଠରୁ ସ୍ପଷ୍ଟ ଧାରଣା କରିହେବ, ଯଥା-

"ଓଁ ସହ ନାବବତୁ । ସହ ନୌ ଭୁନକ୍ତୁ ।
ସହ ବୀର୍ଯ୍ୟଂ କରବାବହୈ । ତେଜସ୍ୱି
ନାବଧୀତମସ୍ତୁ । ମା ବିଦ୍ୱିଷାବହୈ"(୫)

ଏହା ଏକ ବିରୁ ପ୍ରାର୍ଥନା । ଏହାର ତାତ୍ପର୍ଯ୍ୟ-ଆପ୍ତ ଗୁରୁ ଶିଷ୍ୟ ଉଭୟଙ୍କୁ ଏକ ସଙ୍ଗରେ ସର୍ବତୋଭାବେ ରକ୍ଷା କରନ୍ତୁ । ସମୁଚିତଭାବେ ପାଳନ-ପୋଷଣ କରନ୍ତୁ । ଆପ୍ତ ଉଭୟଙ୍କୁ ସବୁ ପ୍ରକାର ଶକ୍ତି ପ୍ରାପ୍ତ କରାନ୍ତୁ । ଆପଣ ଅଧୀତବିଦ୍ୟା ତେଜୋପୂର୍ଣ୍ଣ ହେଉ, ଅର୍ଥାତ୍ ବିଦ୍ୟାରେ କେହି କାହାକୁ ପରାସ୍ତ ନକରି ସାରା ଜୀବନ ପରସ୍ପର ଅନ୍ତରଙ୍ଗ ପ୍ରେମସୂତ୍ରରେ ଆବଦ୍ଧ ରହୁଁ । ଆପ୍ତ ଭିତରେ କେବେ ଦ୍ୱେଷ ସୃଷ୍ଟି ନ ହେଉ । ଆପ୍ତେ ସହବାସୀ ଗୁରୁ ଶିଷ୍ୟ ଏହିପରି ଶାନ୍ତିମୟ ଆଶ୍ରମ-ଜୀବନ ପ୍ରାର୍ଥନା କରୁଅଛୁଁ । ଭାବର କି ଚମତ୍କାରିତା !

## ଆଚାର୍ଯ୍ୟଙ୍କ ଗୁରୁ ଦାୟିତ୍ୱ :

ଆଦ୍ୟତଃ ଆଚାର୍ଯ୍ୟ ନିଜେ ଯଦି ସଦ୍‌ଗୁଣୀ, ସଦାଚାରୀ, ନିର୍ଦ୍ଦୋଷ, ନିରପେକ୍ଷ, ଐଶ୍ୱର୍ଯ୍ୟ ସିଦ୍ଧିସମ୍ପନ୍ନ ବ୍ୟକ୍ତିତ୍ୱର ଅଧିକାରୀ ନ ହୁଅନ୍ତି, ସେ ଗ୍ରହଣ କରିବାକୁ ଯାଉଥିବା ଗୁରୁଦାୟିତ୍ୱର ସୁଷ୍ଠୁ ସମ୍ପାଦନଦ୍ୱାରା ନିଜର କୃତିତ୍ୱ ପ୍ରମାଣ କରିବେ କିପରି ? ସେ ଯେପରି ସ୍ୱକାର୍ଯ୍ୟରେ ଯଶସ୍ୱୀ ହେବେ, ନିନ୍ଦା-ଅପବାଦ ନ ପାଇବେ, ନିଜ ପଦବୀର ଅମର୍ଯ୍ୟାଦା ନ ହେବ, ସେଥିପାଇଁ ନିଜର ସାଧାରଣ ମାନବୀୟ ସତ୍ତା ବିସ୍ମୃତି ଏବଂ ଐଶୀସତ୍ତା ପ୍ରାପ୍ତି ନିମନ୍ତେ ଯଜ୍ଞରେ ପଞ୍ଚାହୁତି-ପ୍ରଦାନ ପୂର୍ବକ ପରମେଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ, ଯଥା-

"ଯଶୋ ଜନେଽସାନି ସ୍ୱାହା । ଶ୍ରେୟାନ୍ ବସ୍ୟସୋଽସାନି ସ୍ୱାହା । ତଂ ତ୍ୱାଭଗ ପ୍ରବିଶାନି ସ୍ୱାହା । ସମାଭଗ ପ୍ରବିଶ ସ୍ୱାହା । ତସ୍ମିନ୍ ସହସ୍ର ଶାଖେ ନି ଭଗାହଂ ତ୍ୱୟି ମୃଜେ ସ୍ୱାହା"(୬)

ପ୍ରାର୍ଥନାର ତାତ୍ପର୍ଯ୍ୟ, ମୁଁ ଯଶସ୍ୱୀ ହୁଏ । ଜଗତରେ ସର୍ବତ୍ର ମୋର ଯଶ ସୌରଭ ପରିବ୍ୟାପ୍ତ ହେଉ । ମୋର ଆଚରଣ ନିର୍ଦ୍ଦୋଷ ହେଉ । ମୁଁ ଧନବାନ୍ ଅପେକ୍ଷା ଅଧିକ ଧନଶାଳୀ ହୁଏ । ହେ ଭଗବନ୍ ! ତୁମର ଦିବ୍ୟ ସ୍ୱରୂପରେ ମୁଁ ପ୍ରବିଷ୍ଟ ହୋଇଯାଏ ଏବଂ ତୁମର ଦିବ୍ୟ ସ୍ୱରୂପ ମୋ ଭିତରେ ପ୍ରବିଷ୍ଟ ହୋଇ ଯାଉ । ହଜାରେ ଶାଖା ବିଶିଷ୍ଟ ତୁମର ଐଶ୍ୱରୀୟ ଦିବ୍ୟ ଦେହରେ ଧ୍ୟାନଦ୍ୱାରା ନିମଗ୍ନ ହୋଇଯାଇ ମୁଁ ଆପଣଙ୍କୁ ବିଶୁଦ୍ଧ କରିଦିଏ ।

ଗୁରୁ କେବଳ ଆତ୍ମକଲ୍ୟାଣ କାମନା କରୁଛନ୍ତି ; ଏପରି ଭ୍ରାନ୍ତ ଧାରଣା ଉପୁଜିବା ସମ୍ଭାବନାର ନିରାକରଣ ପାଇଁ ଏଠାରେ ସୁନିଷ୍ଠ ଦର୍ଶାଇ ଦିଆଯାଇପାରେ ଯେ, ଶିଷ୍ୟଙ୍କ ହିତ କାମନା କରି ସେ ମଧ୍ୟ ତଦ୍‌ବତ୍ ହବନ କରିଥାନ୍ତି । ଅବଗତ ନିମିତ୍ତ ପଞ୍ଚାହୁତି ମନ୍ତ୍ର ପଠନୀୟ-

"ଆ ମାୟନ୍ତୁ ବ୍ରହ୍ମଚାରିଣଃ ସ୍ୱାହା ।
ବିମାୟନ୍ତୁ ବ୍ରହ୍ମଚାରିଣଃ ସ୍ୱାହା ।
ପ୍ରମାୟନ୍ତୁ ବ୍ରହ୍ମଚାରିଣଃ ସ୍ୱାହା ।
ଦମାୟନ୍ତୁ ବ୍ରହ୍ମଚାରିଣଃ ସ୍ୱାହା ।
ଶମାୟନ୍ତୁ ବ୍ରହ୍ମଚାରିଣଃ ସ୍ୱାହା ।"(୭)

ବୈଦିକ ପରମ୍ପରାରେ କଲ୍ୟାଣପ୍ରାପ୍ତି ଅର୍ଥେ ବିହିତ ଉପାସନା ଅନୁଷ୍ଠାନ ଯଜ୍ଞ । ଯଜ୍ଞର ଅଧିଷ୍ଠାତା ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ପଠିତ ମନ୍ତ୍ରର ତାତ୍ପର୍ଯ୍ୟ-

ବିଦ୍ୟାଧ୍ୟୟନ ପାଇଁ ମୋ ପାଖକୁ ଉତ୍ତମ ବ୍ରହ୍ମଚାରୀମାନେ ଆସନ୍ତି ।

ମୋର ବ୍ରହ୍ମଚାରୀ କପଟଶୂନ୍ୟ ହୁଅନ୍ତୁ । ସେମାନେ ଉତ୍ତମ ପ୍ରାମାଣିକ–ଜ୍ଞାନ ଗ୍ରହଣକ୍ଷମ ହୁଅନ୍ତୁ । ଇନ୍ଦ୍ରିୟଦମନକାରୀ ହୁଅନ୍ତୁ ଏବଂ ମନକୁ ନିଜ ବଶରେ ରଖିବାର ସାମର୍ଥ୍ୟ ଲାଭକରନ୍ତୁ । ଏହି ଉଚ୍ଚ ଆଦର୍ଶ ଏବଂ ପବିତ୍ର ଭାବ, "ଗୁରୁ ସାକ୍ଷାତ୍ ପରଂବ୍ରହ୍ମ" ସୂକ୍ତୋକ୍ତିର ସାର୍ଥକତା ପ୍ରତିପାଦନ କରୁ ନାହିଁ କି ?

ବୈଦିକ ଯୁଗରେ ରାଷ୍ଟ୍ରଭାବନାକୁ ସର୍ବୋଚ୍ଚ ସ୍ଥାନ ଦିଆଯାଉଥିଲା । ଜନକଲ୍ୟାଣ ରାଷ୍ଟ୍ର ହିଁ ବୈଦିକ ଆଦର୍ଶ । ବୈଦିକ ପରିଭାଷାରେ ସୁସଂହତ ରାଷ୍ଟ୍ର 'ପୁଣ୍ୟଲୋକ' । ବ୍ରହ୍ମଶକ୍ତି–ମହାଶକ୍ତି, ଯାହା କି ରାଷ୍ଟ୍ରସ୍ଥିତିର ଅନ୍ୟତମ ଆଧାର । "ସ ଦାଧାର ପୃଥିବୀଂ ଦିବଂଚ" ଅଥର୍ବବେଦ ମନ୍ତ୍ରରେ ବ୍ରହ୍ମଚାରୀଙ୍କୁ ଜଗତ୍ ତଥା ବିଶ୍ୱ ସଞ୍ଚାଳନ କର୍ମର ଆଧାରଭୂତ କୁହା ଯାଇଛି । ତେଜସ୍ୱୀ, ଓଜସ୍ୱୀ ବ୍ରହ୍ମଚାରୀ ରାଷ୍ଟ୍ରରେ ପ୍ରକୃତ ମାନବ ସମ୍ପଦ । ବୈଦିକ ଶିକ୍ଷାର ମୁଖ୍ୟ ଲକ୍ଷ୍ୟ ରାଷ୍ଟ୍ରର ନିର୍ଭରଯୋଗ୍ୟ ଜ୍ଞାନଗରିଷ୍ଠ ଓ ତେଜଃ ଓଜଃ ସମ୍ପନ୍ନ ନାଗରିକ ଗଠନ । ତଦନୁରୂପ ଶିକ୍ଷା ଦିଆ ଯାଉଥିଲା–

"ତେଜୋଽସି ତେଜୋମୟି ଧେହି ।
ବୀର୍ଯ୍ୟମସି ବୀର୍ଯ୍ୟ ମୟି ଧେହି ।
ବଳମସି ବଳଂ ମୟି ଧେହି ।
ଓଯୋଽସ୍ୟୋଜୋ ମୟି ଧେହି" ।(୮)

ସ୍ମୃତିଶାସ୍ତ୍ରୀୟ ପରିଭାଷାରେ ବେଦବିଦ୍ୟାଦାନକୁ 'ବ୍ରହ୍ମଦାନ' (୯) କୁହାଯାଇଛି ଏବଂ ସର୍ବବିଧ ଦାନ ମଧ୍ୟରେ ଏହା ସର୍ବଶ୍ରେଷ୍ଠ । ବିଦ୍ୟାର୍ଥୀ ବ୍ରହ୍ମ ଚାରୀର ବ୍ରହ୍ମ ସ୍ୱରୂପ ବିଷୟକ ଜ୍ଞାନ ସର୍ବାଦୌ ଆବଶ୍ୟକ । ପରମାତ୍ମା ପରଂବ୍ରହ୍ମ ଏକ । ମାତ୍ର ସେ ଆଧିଦୈବିକ ଆଧ୍ୟାତ୍ମିକ ଓ ଆଧିଭୌତିକ ଶକ୍ତିରୂପେ ମିତ୍ର, ବରୁଣ, ଅଗ୍ନି, ବାୟୁ, ଇନ୍ଦ୍ରାଦି ଭିନ୍ନ ଭିନ୍ନ ନାମରୂପଧାରୀ ବିଶେଷ ବିଶେଷ ଶକ୍ତି ଅଧିଷ୍ଠାତ୍ରୀ ଦେବତାଙ୍କର ଆତ୍ମ ରୂପେ ଅଧିଷ୍ଠିତ । ତେଣୁ ସେ ଭିନ୍ନ ଭିନ୍ନ ନାମ ଓ ରୂପରେ ସ୍ତବନୀୟ । ଉପନିଷଦୀୟ ଉପଦେଶ–"ଉତ୍ତିଷ୍ଠିତ ଜାଗ୍ରତ ପ୍ରାପ୍ୟବରୀ ନିବୋଧତ"(୧୦), ଅର୍ଥାତ୍ ଉଠ, ଜାଗ୍ରତହୁଅ ଏବଂ ଗୁରୁ–ମହାପୁରୁଷଙ୍କ ପାଖକୁଯାଇ ପରମେଶ୍ୱରଙ୍କୁ ଜାଣ ।

## ନିଷ୍ଠା, ଐକାଗ୍ର୍ୟ ଓ ଅଧ୍ୟବସାୟ ବିଷୟକ ଶିକ୍ଷା :

"ଓଁ ବାଙ୍‌ମେ ମନସି ପ୍ରତିଷ୍ଠିତା । ମନୋ ମେ ବାଚି ପ୍ରତିଷ୍ଠିତମାବିରାବୀର୍ମ ଏଧି । ବେଦସ୍ୟ ମ ଆଣୀସ୍ଥ୍ୟ ଶ୍ରୁତଂ ମେ ମା ପ୍ରହାସୀଃ । ଅନେନାଧୀତେ ନାହୋରାତାନ୍ ସଂଦଧାମି" ।(୧୧)

ମୋର ବାଣୀ ମନରେ ଏବଂ ମନ ବାଣୀରେ ପ୍ରତିଷ୍ଠିତ ହେଉ । ଏହାର ତାତ୍ପର୍ଯ୍ୟ, ବେଦବିଦ୍ୟା ସାଧନ ସଂକଳ୍ପର ସଫଳତା ପାଇଁ ମୋର ମନ ଓ ବଚନ ଉଭୟ ଏକ ହୋଇ ଯାଉ । ଜ୍ଞାନ ପ୍ରାପ୍ତି ଦିଗରେ ସହାୟକ ହୁଅନ୍ତୁ । ଯାହା ଗୁରୁଙ୍କ ମୁଖରୁ ଶୁଣିବି ଅଥବା ନିଜ ଅନୁଭବରୁ ଜାଣିବି, ତାହା ବିସ୍ମୃତ ନ ହେଉ । ମୋର ଦିବାରାତି ଏକାକାର ହୋଇଯାଉ । ପଠନ ଓ ଚିନ୍ତନରେ ମୋର ସାରା ଦିନରାତି କଟୁ, ମୁହୂର୍ତ୍ତଟିଏ ବି ବ୍ୟର୍ଥରେ ନ ଯାଉ । ଶ୍ରୀମଦ୍ ଗୀତା କହନ୍ତି–

"ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ "(୧୨)

ମନୁଷ୍ୟ ନିଜ ନିଜର କର୍ମରେ ନିଷ୍ଠାର ସହିତ ରତ ହେଲେ । ସମ୍ପୂର୍ଣ୍ଣ ସିଦ୍ଧିଲାଭ କରେ ।

## ତ୍ୟାଗର ଅଙ୍ଗୀକାର :

ସଂସାରର ଭୋଗ୍ୟ ବସ୍ତୁ ପ୍ରତି ଆସକ୍ତି ଓ ସ୍ପୃହା ତ୍ୟାଗପାଇଁ ଅଭ୍ୟୁଦୟକାମୀ ବ୍ରହ୍ମଚାରୀଙ୍କୁ ବେଦବ୍ରହ୍ମଙ୍କର ପବିତ୍ର ଆଦେଶ–

"ଈଶା ବାସ୍ୟମିଦଂ ସର୍ବ
ଯତ୍କିଞ୍ଚ ଜଗତ୍ୟାଂ ଜଗତ୍
ତେନ ତ୍ୟକ୍ତେନ ଭୁଞ୍ଜୀଥା
ମା ଗୃଧଃ କସ୍ୟ ସ୍ୱିଦ୍ ଧନମ୍"(୧୩)

ଚରାଚର ସୃଷ୍ଟିରେ ସର୍ବାଧିପତି, ସର୍ବ–କଲ୍ୟାଣସ୍ୱରୂପ ପରଂ ପରିବ୍ୟାପ୍ତ । ସମସ୍ତ ଜାଗତିକ ଭୋଗ୍ୟା ଭୋଗ୍ୟ ବସ୍ତୁ ତାଙ୍କର ତେଜରୁ ସମ୍ଭୂତ– "ଯଦ୍ ଯଦ୍ ବିଭୂତି ମତ୍ ସତ୍ତ୍ୱଂ"(୧୪), ଅର୍ଥାତ୍ ପରମେଶ୍ୱରଙ୍କର ଅଂଶ ବିଶେଷ । ତେଣୁ ଈଶ୍ୱରଙ୍କୁ ସଦା ସ୍ମରଣ ରଖ । ଅନାସକ୍ତ ରହ । ଭୋଗ–ସ୍ପୃହା ତ୍ୟାଗ କର । କେବଳ ଈଶ୍ୱର ସେବା ରୂପ କର୍ମ ଏବଂ ଧର୍ମ ଆଚରଣାଦି କର୍ତ୍ତବ୍ୟପାଳନାର୍ଥେ ବିଷୟର ଯଥାବିଧି ଉପଯୋଗ କର । ଉପଦିଷ୍ଟ ବ୍ରହ୍ମଚାରୀ ଉଦ୍‌ବୁଦ୍ଧ ହୋଇ ପ୍ରତିଜ୍ଞାବଦ୍ଧ ହୁଏ–"ଋତଂ ବଦିଷ୍ୟାମି । ସତ୍ୟଂ ବଦିଷ୍ୟାମି ।ତନ୍ମାମବତୁ । ତଦ୍ ବକ୍ତାରମବତୁ"(୧୫) । ଏହାର ତାତ୍ପର୍ଯ୍ୟ "ପ୍ରାଣୀଙ୍କ ନିମନ୍ତେ ସର୍ବବିଧ କଲ୍ୟାଣକାରୀ ନିୟମର ଅଧିଷ୍ଠାତା ମଧୁବାଣୀ ଓ ସତ୍ୟ ଭାଷଣର ଅଧିଷ୍ଠାତା, ଭାବରେ ମୁଁ ତୁମକୁ ସ୍ତୁତି କରିବି–ମୋତେ ରକ୍ଷାକରନ୍ତୁ ; ଶାସ୍ତ୍ରବ୍ରହ୍ମ ପ୍ରଦତ୍ତ କଲ୍ୟାଣକର ଉପଦେଶାବଳୀକୁ ସର୍ବତ୍ର ପ୍ରଶ୍ନର ପ୍ରସାର କରିବାର ଶକ୍ତିପ୍ରଦାନ ପୂର୍ବକ ମୋର ଗୁରୁବ୍ରହ୍ମାଙ୍କୁ ରକ୍ଷା କରନ୍ତୁ ।"

ଭଦ୍ରଭାବନାରେ ଓତଃପ୍ରୋତଃ ବେଦବ୍ରହ୍ମ ଶିଷ୍ୟ ବ୍ରହ୍ମଚାରୀଙ୍କ କଣ୍ଠରେ କିପରି ଉଦାତ୍ତ ସଂକଳ୍ପ–ବାଣୀ ତୋଳିଛନ୍ତି ଦେଖିବା––ଶୁଣିବା–

"ଓ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା
ଭଦ୍ରଂ ପଶ୍ୟେ–ମାକ୍ଷଭି ର୍ଯଜତ୍ରାଃ
ସ୍ଥିରୈ ରଙ୍ଗୈସ୍ତୁଷ୍ଟୁବାଂ ସସ୍ତନୂଭି–
ର୍ବ୍ୟଶେମ ଦେବହିତଂ ଯଦାୟୁଃ"(୧୬)

ବିଦ୍ୟାର୍ଥୀ ବ୍ରହ୍ମଚାରୀ ନିଜର, ଆଚାର୍ଯ୍ୟଙ୍କର, ସହପାଠୀମାନେ ସମଗ୍ର ମାନବ ସମାଜର କଲ୍ୟାଣ– ସାଧନ ଅର୍ଥେ ପ୍ରଥମେ ଆପଣାର ଶାରିରିକ ଔତ୍କର୍ଷ– ଲାଭପାଇଁ ପ୍ରାର୍ଥନା କରେ । ହେ ଦେବଗଣ ! ମୁଁ ସବୁବେଳେ କାନରେ ଭଲକଥା ଶୁଣେ । ପର ନିନ୍ଦା, ଚୁଗୁଲି ମୋ କାନରେ ନ ପଡୁ । ଆଖିରେ ଭଲ ଦୃଶ୍ୟ ଦେଖେ । ଜୀବନର ଅଧୋପତନ ଘଟାଇବାଭଳି କୌଣସି କୁଦୃଶ୍ୟ ଦୃଷ୍ଟିରେ ନ ପଡୁ । ଜୀବନକାଳ ଭଗବଦ୍ ଆରାଧନାରେ ବିତୁ । ଅଙ୍ଗପ୍ରତ୍ୟଙ୍ଗ ସୁପୁଷ୍ଟ ଓ ସୁଦୃଢ଼ ହେଉ, ଯାହାକୁ ମୁଁ ଭଗବାନଙ୍କ କାର୍ଯ୍ୟରେ ଲଗାଇ ପାରିବି । ମୋର ଆୟୁଃ ନିରର୍ଥକ ଭୋଗ ବିଳାସରେ ବ୍ୟୟିତ ନ ହେଉ । ତୁଷ୍ଟରେ ଭଗବାନଙ୍କର

ନାମମାତ୍ର ଥାଉ। ଏହି ମହନୀୟ ଭାବ ଆଧାରରେ ଗାନ୍ଧିଜୀ କଳ୍ପନା କରିଥିଲେ-ହାତରେ ଆଖି-କାନ-ପାଟି ବନ୍ଦକରି ବସିଥିବା ତିନୋଟି ମାଙ୍କଡ଼ର ଚିତ୍ର। ଆମେ କଥାରେ କହୁଁ, ମାଙ୍କଡ଼ା ପିଲାଟା ; ମାଙ୍କଡ଼ ଶିଶୁର ପ୍ରତୀକାସ୍ୱରୂପ।

କେବଳ ନିଜ ସମାଜର, ନିଜ ଆତ୍ମୀୟ-ସ୍ୱଜନଙ୍କର କଲ୍ୟାଣପ୍ରାପ୍ତି କଣ ମନୁଷ୍ୟର କାମ ? ନା, ସେପରି ସଂକୀର୍ଣ୍ଣ ଓ ପକ୍ଷପାତି ଚିନ୍ତନକୁ ବେଦଦ୍ରଷ୍ଟା ପ୍ରଶ୍ରୟ ଦେଇ ନାହାନ୍ତି। ମନ୍ତ୍ର ପାଠକରନ୍ତି–

"ଯତେ ଯତଃ ସମୀହସେ
ତତୋ ନୋଽଭୟଂ କୁରୁ ଶଂନଃ
କୁରୁ ପ୍ରଜାଭ୍ୟୋଽଭୟଂ ନଃ ପଶୁଭ୍ୟଃ"

ଏଥିରେ ସମସ୍ତ ଲୋକ ଏବଂ ପଶୁଙ୍କର କଲ୍ୟାଣ କାମନା କରାଯାଇଛି। ବେଦର ବାଣୀ ହେଲା-"ସ ନଃ ପବସ୍ୱ ଶଂ ଗବେ ଶଂ ଜନାୟ ସର୍ବତେ। ରାଜନ୍ନୋଷଧୀଭ୍ୟଃ"(୧୭), ଅର୍ଥାତ୍ ଇଶ୍ୱର ଆସର ଗୋରୁ, ଅଶ୍ୱ ଆଦି ପଶୁ ଏବଂ ଔଷଧି ପ୍ରତି ମଧ୍ୟ କଲ୍ୟାଣ କାରକ ହୁଅନ୍ତୁ।

ଗୁରୁକୁଳରେ ଶିକ୍ଷାସମାପନ ପରେ ବ୍ରହ୍ମଚର୍ଯ୍ୟା ଶ୍ରମର ପରିସମାପ୍ତି ଘଟେ। ତାହାପରେ ବ୍ରହ୍ମଚାରୀକୁ ଗୃହସ୍ଥାଶ୍ରମରେ ପ୍ରବେଶ କରିବାପାଇଁ ପ୍ରସ୍ତୁତ କରାଯାଏ। ଗୁରୁକୁଳରୁ ବିଦାୟ ଲଗ୍ନରେ ତା'ର ହୁଏ ସମାବର୍ତ୍ତନ ସଂସ୍କାର। ଗୃହସ୍ଥାଶ୍ରମରେ ପ୍ରବେଶକଲେ ଗୃହସ୍ଥ ଧର୍ମର ଯେଉଁ ମହତ୍ ଅନୁଶାସନ ପାଳନୀୟ, ବ୍ରହ୍ମଚାରୀକୁ ତାହା ଶିକ୍ଷା ଦିଆଯାଏ, ଯଥା–"ସତ୍ୟଂ ବଦ। ଧର୍ମଂ ଚର। ସ୍ୱାଧ୍ୟାୟାନ୍ମା ପ୍ରମଦଃ", ଇତ୍ୟାଦି (୧୮)। ବୈଦିକ ଅନୁଶାସନର ଅର୍ଥ, ଇଶ୍ୱରଙ୍କ ଆଜ୍ଞା ତଥା ପରମ୍ପରାଗତ ହିତୋପଦେଶ।

ହେ ବତ୍ସ ! ସତ୍ୟ ଭାଷଣ କର। ଶାସ୍ତ୍ରସମ୍ମତ ସ୍ୱଧର୍ମାଚରଣ କର। ସ୍ୱାଧ୍ୟାୟ--ବ୍ରତୀ ହୁଅ, ଅର୍ଥାତ୍ ପଠିତ ବେଦାଭ୍ୟାସ ସଙ୍ଗେ ସଙ୍ଗେ ସନ୍ଧ୍ୟା, ବନ୍ଦନ, ଗାୟତ୍ରୀ ମନ୍ତ୍ର ଜପ ଏବଂ ଭଗବାନଙ୍କ ନାମ-ଗୁଣକୀର୍ତ୍ତନାଦି ନିତ୍ୟ କର୍ମରେ କେବେ ପ୍ରମାଦ କର ନାହିଁ। ଅନାଦରରେ ଏସବୁ କର ନାହିଁ କିମ୍ବା ଆଳସ୍ୟର ତ୍ୟାଗ କର ନାହିଁ। ଐତିହ୍ୟ-ପରମ୍ପରାର ସୁରକ୍ଷା କର। ଦେବ କାର୍ଯ୍ୟ, ପିତୃକାର୍ଯ୍ୟରେ ଅବହେଳା କର ନାହିଁ। ଶାସ୍ତ୍ରାନୁଶାସନ–

"ମାତୃଦେବୋ ଭବ। ପିତୃଦେବୋ ଭବ। ଆଚାର୍ଯ୍ୟ ଦେବୋ ଭବ। ଅତିଥି ଦେବୋ ଭବ।"(୧୯)

ମାତା, ପିତା, ଗୁରୁ ଓ ଅତିଥିଙ୍କୁ ଦେବତାଜ୍ଞାନ କରିବାକୁ ଏଥିରେ ଉପଦେଶ ଦିଆଯାଇଛି। ଏହି ଗୁରିଜଣଙ୍କୁ ସ୍ୱୟଂ ଈଶ୍ୱରଙ୍କ ପ୍ରତିମୂର୍ତ୍ତି ଭାବି ନିତି ନମସ୍କାର କର। ଶ୍ରଦ୍ଧା ଓ ଭକ୍ତି ପୂର୍ବକ ସେବା କର। ବିନମ୍ର ବନତ ପୂର୍ବକ ସେମାନଙ୍କର ଆଜ୍ଞା ପାଳନ କର। ସେମାନଙ୍କୁ ସଦା ପ୍ରସନ୍ନ ରଖିବା କର୍ତ୍ତବ୍ୟ।

ବେଦର ଉପଦେଶ–"କୃଣ୍ୱନ୍ତୋ ବିଶ୍ୱମାର୍ଯ୍ୟମ୍ ସତ୍ୟର ଜ୍ୟୋତିକୁ ଧାରଣ କଲେ ମନୁଷ୍ୟ ଆର୍ଯ୍ୟହୁଏ। ଚରିତ୍ର ଉଦାର ହୁଏ। "ବସୁଧୈବ କୁଟୁମ୍ବକମ୍" ଜ୍ଞାନରୁ "ସୌମନସ୍ୟ" ବା ବିଶ୍ୱ ବନ୍ଧୁତ୍ୱ ଭାବୋଦୟ ହୁଏ। ସମସ୍ତଙ୍କୁ ମିତ୍ର ଦୃଷ୍ଟିରେ ଦେଖିବା, ପରିଚିତ ଅପରିଚିତ ସବୁ ମନୁଷ୍ୟଙ୍କ ପ୍ରତି ସଦ୍‌ଭାବନା ପୋଷଣ କରିବା ଉଦାର ଚରିତ୍ରର ମହନୀୟତା ବୈଦିକ ସାହିତ୍ୟର ଅଛି କେତେଗୋଟି ଚରିତ୍ର ଗଠନମୂଳକ ଅନୁଶାସନ ଉପରେ ବିହଙ୍ଗ-ଦୃଷ୍ଟିପାତ କରାଯାଉ। "ମା ହିଂସେ ଥାଃ"– ମନୁଷ୍ୟ, ପଶୁ, ପକ୍ଷୀ କାହାର ପ୍ରତିହିଂସାଚରଣ କର ନାହିଁ। "ମା ଭୈଃ"–କାହାରିକୁ ଭୟ କର ନାହିଁ। ଆସ କଲ୍ୟାଣାର୍ଥେ ସର୍ବଦା–"କ୍ରତୋ ସ୍ମର--କ୍ରତୋ ସ୍ମର" (୨୦), ଅର୍ଥାତ୍ କେବଳ ଯଜ୍ଞାଦି କର୍ମ ଏବଂ ଯଜ୍ଞସ୍ୱରୂପ ପରମାତ୍ମ ଦେବଙ୍କୁ ସ୍ମରଣ କର। ସର୍ବୋପରି ଜ୍ଞାନଗର୍ଭ ଅଥର୍ବ ବେଦର ରାଷ୍ଟ୍ରହିତମୂଳକ ମହତୀ ଶିକ୍ଷା–

"ସଂ ବଃ ପୃଚ୍ୟନ୍ତାଂତନ୍ୱଃ ସଂମନାଂସି ସମୁବ୍ରତାଃ"
ସଂ ବୋଽୟଂ ବ୍ରହ୍ମଣସ୍ପତିର୍ଭଗଃ ସଂବୋ ଅଜୀଗମତ୍

ଏହାର ତାତ୍ପର୍ଯ୍ୟ ପରସ୍ପର ମଧ୍ୟରେ ଅନ୍ତର୍ବିବାଦ ପରିହାର ପୂର୍ବକ ସମାଜ ଓ ରାଷ୍ଟ୍ରର ସମତା ଓ ଏକତା ରକ୍ଷା କରିବା କର୍ତ୍ତବ୍ୟ। ଏହିପରି ଅସଂଖ୍ୟ ଅନୁଶାସନର ଅନନ୍ତଗର୍ଭ ବେଦ ବେଦାନ୍ତ ଗ୍ରନ୍ଥ, ଯାହା କୁ ମୁଖ୍ୟତଃ ଚର୍ଚ୍ଚା-ଅନୁଶୀଳନଦ୍ୱାରା ଅବାଲ୍ୟରୁ ମନୁଷ୍ୟ ଶିଶୁକୁ ସୁମନୁଷ୍ୟ କରି ଗଢ଼ିବା ପାଇଁ ଉଦ୍ଦିଷ୍ଟ।

## ନୂତନ ନୀତି ପ୍ରବର୍ତ୍ତନ :

ପରବର୍ତ୍ତୀ କାଳରେ ମନୁସ୍ମୃତି ଆଦି ବହୁ ଧର୍ମ ଶାସ୍ତ୍ର ବା ସାମାଜିକ ସଂବିଧାନ ପ୍ରଣୀତ ହେବା ପରେ ଶିକ୍ଷାଦାନ ବ୍ୟବସ୍ଥାର କେତେକ ପରିବର୍ତ୍ତନ ଘଟିଲା। ସହଶିକ୍ଷା ନିଷିଦ୍ଧ ହେଲା। ସ୍ୱାମୀ ଶ୍ରୀମଦ୍ ଦୟାନନ୍ଦ ସରସ୍ୱତୀଙ୍କ ବ୍ୟାନରୁ ଜଣାଯାଏ, (୨୧) ବାଳକ: ଓ ବାଳିକା ବିଦ୍ୟାଳୟ ପରସ୍ପରଠାରୁ ନ୍ୟୁନକ୍ରୋଶ ଦୂରବର୍ତ୍ତୀ ହେବ। ବାଳିକା ବିଦ୍ୟାଳୟରେ ସ୍ତ୍ରୀ ଓ ବାଳକ ବିଦ୍ୟାଳୟରେ କେବଳ ପୁରୁଷ କର୍ମଚାରୀ ରହିବେ। ପାଞ୍ଚବର୍ଷର ବାଳକ-ବାଳିକା ମଧ୍ୟ କେହି କାହାରି ପାଠଶାଳାକୁ ଯିବେନାହିଁ। କେହି କାହାର ସଂସ୍ପର୍ଶରେ ଆସିବେ ନାହିଁ। ପରସ୍ପର ଦର୍ଶନ, ଏକାନ୍ତ ସେବନ, ସମ୍ଭାଷଣ, ବିଷୟାଳାପ, କ୍ରୀଡା, ବିଷୟଚିନ୍ତା ଓ ବିଷୟସଙ୍ଗ ଆଦି ଅଷ୍ଟବିଧ ମୈଥୁନରୁ ଦୂରରେ ରହିବେ। ଏପରି କି ଗୁରୁକୁଳ ବାସ ସମୟରେ ବ୍ରହ୍ମଚାରୀ-ବ୍ରହ୍ମଚାରିଣୀମାନେ ନିଜର ପିତାମାତାଙ୍କ ସଙ୍ଗେ ସାକ୍ଷାତ କରିବେ ନାହିଁ କି ଚିଠିପତ୍ର ସମ୍ପର୍କ ମଧ୍ୟ ରଖିବେ ନାହିଁ। ଏହି ବ୍ୟବସ୍ଥାରେ ଶିଶୁ ଶିକ୍ଷାକୁ ବାଧତାମୂଳକ କରିବାର ପରିକଳ୍ପନା କରାଯାଇଛି।

ପୁରାଣ ଯୁଗୀୟ ଗୁରୁ-ଶିଷ୍ୟ ପରମ୍ପରାରେ ଆମେ ଦେଖିବାକୁ ପାଉଁ ନାରଦ, ଶୁକ୍ର, ବଶିଷ୍ଠ, ସାନ୍ଦୀପନୀ, ବ୍ୟାସ ପ୍ରଭୃତି ବିଶିଷ୍ଟ ଆଚାର୍ଯ୍ୟଙ୍କୁ ଏବଂ ଧ୍ରୁବ, ପ୍ରହ୍ଲାଦ, ଶ୍ରୀରାମ, ଶ୍ରୀକୃଷ୍ଣ, ଶୁକ ଆଦି ଶିଷ୍ୟବର୍ଗଙ୍କୁ। ସେ କାଳରେ ଶିଶୁ ଶିକ୍ଷା ପଦ୍ଧତି ପ୍ରାୟତଃ ବୈଦିକ ପରମ୍ପରା ପ୍ରଭାବିତ ଥିବା ଜଣାଯାଏ। ଯୁଗେ ଯୁଗେ ଶ୍ରୀରାମ 'ସତ୍ୟସନ୍ଧ', ଅର୍ଥାତ୍ ସତ୍ୟ-ପ୍ରତିଜ୍ଞ ଭାବରେ ବିଶେଷିତ ଏବଂ ପୁରାଣ ପ୍ରଖ୍ୟାତ। ତାଙ୍କ ଆଗରେ ଶିକ୍ଷାର ଆଦର୍ଶ କଣ ଥିଲା ?

"ସତ୍ୟମେବେଶ୍ୱରୋ ଲୋକେ
ସତ୍ୟଧର୍ମଃ ସଦାଶ୍ରିତଃ
ସତ୍ୟ ମୂଳାନି ସର୍ବାଣି
ସତ୍ୟାନ୍ନାସ୍ତି ପରଂପଦମ୍"(୨୨)

ଧ୍ରୁବ, ପ୍ରହ୍ଲାଦ ହେଲେ ପୁରାଣ ପ୍ରସିଦ୍ଧ ଭକ୍ତ; ଶ୍ରୀକୃଷ୍ଣ ହେଲେ ମହାଯୋଗେଶ୍ୱର ; ମହାଭାଗବତ ହେଲେ ଶ୍ରୀଶୁକମୁନି । ଉଚ୍ଚକୋଟିର ବାଲ୍ୟ ଶିକ୍ଷାର ଭଗବତ୍ତା ପ୍ରାପ୍ତହୋଇ ସେମାନେ ଆଜି ଜଗତର ପୂଜ୍ୟ ।

ଐତିହାସିକ ଯୁଗରେ, ସନାତନ ଆର୍ଯ୍ୟ ପରମ୍ପରାର ସଂସ୍କାର ଆଳରେ ଜୈନ, ବୌଦ୍ଧାଦି ଶାଖା ଧର୍ମ ସମ୍ପ୍ରଦାୟର ସୃଷ୍ଟି ହେଲା । ସେ ସବୁ ମୁଖ୍ୟତଃ ଚରିତ୍ରପ୍ରଧାନ ଧର୍ମ । ଜୈନ ଆଗମ ଶାସ୍ତ୍ରରେ ଚରିତ୍ର ନିର୍ମାଣ ବିଷୟକ ବ୍ୟାପକ ତତ୍ତ୍ୱପୂର୍ଣ୍ଣସୂତ୍ରର ଅବତାରଣା କରାଯାଇଛି । ଆତ୍ମଶୁଦ୍ଧିରୁ ପରମ ତତ୍ତ୍ୱର ଉପଲବ୍ଧି ସମ୍ଭବ; ତେଣୁ "ଆତ୍ମଶୁଦ୍ଧି ସାଧନଂ ଧର୍ମଃ" ସେମାନଙ୍କ ମୂଳ ମନ୍ତ୍ର । ତଦନୁସାରେ ଶିଶୁମାନଙ୍କୁ ପ୍ରଥମରୁ 'ଆତ୍ମାନୁଶାସନ' ଶିକ୍ଷା ଦିଆଯାଉଥିଲା । ସେମାନେ 'ମହାବ୍ରତ', ଅର୍ଥାତ୍ ନିବୃତ୍ତି ମାର୍ଗରେ ଦୀକ୍ଷିତ ହେଉଥିଲେ । ଏହାର ତାତ୍ପର୍ଯ୍ୟ, କାୟ-ମନୋ ବାକ୍ୟରେ ଶୈଶବରୁ ଅସତ୍ୟ, ହିଂସା, ଚୌର୍ଯ୍ୟ, ମୈଥୁନ ଓ ପରିଗ୍ରହାଦି ଅପକର୍ମରୁ ନିବୃତ୍ତ ରହି ଉତ୍ତମ ଚରିତ୍ରବାନ୍ ହୋଇ ପାରିବେ । ସମ୍ପ୍ରତି ଦୂରଦର୍ଶନରେ 'ଚାଣକ୍ୟ' ଧାରା ବାହିକ ପ୍ରଦର୍ଶିତ ହେଉଛି । ସୁଖର କଥା, ଗୁରୁକୁଳ-ଶିକ୍ଷା ବିଷୟକ ବେଶ୍ ଆକର୍ଷଣୀୟ ଦୃଶ୍ୟମାନ ସେଥିରେ ଦେଖିବାକୁ ମିଳୁଛି । ଏ କାଳର ବିଦ୍ୟାର୍ଥୀମାନଙ୍କୁ ତାହା କେତେଦୂର ପ୍ରଭାବିତ କରିବ ବା ପ୍ରେରଣା ଯୋଗାଇବ, କହିହେଉ ନାହିଁ । କେବଳ ତଦ୍‌ବିଷୟକ ପଠିତ ପୁସ୍ତକଗତ ଜ୍ଞାନଠାରୁ ଯତ୍‌କିଞ୍ଚିତ୍ ପ୍ରତ୍ୟକ୍ଷଦର୍ଶୀ ଜ୍ଞାନ ଲାଭର ସହାୟକ ହେବ, ଅନ୍ତତଃ ଏତିକି ଆଶା କରିବାର କଥା ।

ଆମର ସାମ୍ପ୍ରତିକ ସଭ୍ୟତା-ସଂସ୍କୃତିରେ ଐତିହାସିକ କାଳର ଗୁରୁତ୍ୱ ଯଥେଷ୍ଟ । ଇତିହାସ ଆର୍ଯ୍ୟ ଗୋଷ୍ଠୀକୁ କେଉଁ କାସ୍ପିଆନ ହ୍ରଦ କୂଳ ମଧ୍ୟ ଏସିଆରୁ ଆଣି ଭାରତ ଭୂଖଣ୍ଡରେ ଜବର ଦଖଲକାରୀ ଅଣ ଆଦିବାସୀ କରି ଥୋଇଛି । ଏବେ ତା'ର ପରିଣାମ ଏ ଦେଶବାସୀ ହାଡ଼େ ହାଡ଼େ ଭୋଗୁଛନ୍ତି; ଆହୁରି 'ଅପରେ କିଂ ଭବିଷ୍ୟତି'; ପୃଥିବୀ ଇତିହାସର ପୃଷ୍ଠା ଓଲଟାଇ ଗଲିଲେ ଆଖିରେ ପଡ଼େ ବହୁ ଉତ୍‌ଥାନ - ପତନର ଲୋମହର୍ଷଣକାରୀ ଦୃଶ୍ୟ । ପଞ୍ଚଦଶ-ଷୋଡ଼ଶ ଶତାବ୍ଦୀରୁ ଗଡ଼ିଚାଲିଲା ଇତିହାସର କ୍ରୂର କାଳଚକ୍ର; ଦୁର୍ବଳ ଉପରେ ସବଳର ଅଭିଯାନ । ବିଶ୍ୱବ୍ୟାପୀ ଔପନିବେଶିକ ବାଦ ବିସ୍ତାରରେ ହେଲା । ଦରିଆପାରି ଦେଶରେ ଆସିଲା ଶିଳ୍ପ ବିପ୍ଳବର ଯୁଗ । ଭାରତ ଭଳି ଉଦାର, ସହନଶୀଳ, ଏକାନ୍ତ ଅଧ୍ୟାତ୍ମ ପ୍ରବଣ ଦେଶ ଚରମ ବିପର୍ଯ୍ୟୟର ଶିକାର ହେଲା । ବଦଳିଗଲା ଆର୍ଯ୍ୟ ସଭ୍ୟତା-ସଂସ୍କୃତି-ଐତିହ୍ୟ-ପରମ୍ପରା ସିଦ୍ଧ ସମାଜତନ୍ତ୍ର । ବିଦେଶୀକ ଶିକ୍ଷାପଦ୍ଧତିର ପ୍ରଚଳନ ହେଲା । ଯାନ୍ତ୍ରିକ ଶକ୍ତି ବଳରେ ବୈଷୟିକ ଶିଳ୍ପର ଉନ୍ନତି କେତେକାଂଶରେ ଘଟିଲା ସିନା, ଯାନ୍ତ୍ରିକ ଶକ୍ତି ଭିତ୍ତିକ ଏ ଦେଶର ଯୁଗଯୁଗର ସମୃଦ୍ଧି ମଣ୍ଡିତ କୁଟୀର ଶିଳ୍ପ ସମ୍ପୂର୍ଣ୍ଣ ଦେବାଳିଆ ହୋଇ ଏକ ପ୍ରକାର ଆତ୍ମସତ୍ତା ରହିତ ହେଲା ଦୁର୍ଭାଗ୍ୟ ବଖାଣର ବାହୁଲ୍ୟ ନିଷ୍ପ୍ରୟୋଜନ । ଉନବିଂଶ ଶତାବ୍ଦୀର ଜାଗରଣ ଓ ନବ ଆଭିମୁଖ୍ୟ ଅବଶ୍ୟ ଅନୁଧ୍ୟେୟ ।

ଏବେ ଶିଶୁ ଶିକ୍ଷା, ଶିଶୁ ସାହିତ୍ୟର ସ୍ୱାତନ୍ତ୍ର୍ୟ ଏବଂ ବିକାଶ ବିଷୟରେ ପ୍ରବଳ ସ୍ୱର ଉଠେ । ଏହା ନିଶ୍ଚୟ ଏକ ଶୁଭଲକ୍ଷଣ ଏବଂ ସର୍ବଥା ସ୍ୱାଗତଯୋଗ୍ୟ । ମାତ୍ର ଏହାର ଦିଗ୍‌ଦର୍ଶନ ହିଁ ଚିନ୍ତାର ବିଷୟ । ଆଦର୍ଶ ବ୍ୟକ୍ତିତ୍ୱ ଗଠନ, ସାତ୍ତ୍ୱିକ ଗୁଣର ବିକାଶ, ଆଧ୍ୟାତ୍ମିକ ଶକ୍ତିର ପରିପୁଷ୍ଟି ଏବଂ ସର୍ବୋପରି ସୁନାଗରିକ ସୃଷ୍ଟିଦ୍ୱାରା ଜାତୀୟ ଚରିତ୍ରର ଗୁଣାତ୍ମକ ଅଭିବୃଦ୍ଧି ଆମ ଶିଶୁ ଶିକ୍ଷାର ମୌଳିକ ଲକ୍ଷ୍ୟ ଥିଲା । ପୂର୍ବେ ଆମ ଗ୍ରାମ୍ୟ ଚାଟଶାଳୀମାନଙ୍କରେ ଶିଶୁମାନଙ୍କୁ ଅମରକୋଷ, ବିଦଗ୍ଧ ଚିନ୍ତାମଣି, ମଥୁରା ମଙ୍ଗଳ-ପରିଉଚ୍ଚାଙ୍ଗ ଗାନଯୋଗ୍ୟ କାବ୍ୟ, ଜଗନ୍ନାଥ ଦାସଙ୍କ ଭାଗବତ ଆଦି ଶିକ୍ଷା ଦିଆ ଯାଉଥିଲା । ବିଗତ ଶତକର ଅଷ୍ଟମ ଦଶକ ବେଳକୁ (ଖ୍ରୀ: ୧୮୭୩-୧୯୦୮) ମଧୁସୂଦନ ରାଓ ଓଡ଼ିଆ ଶିଶୁ ସାହିତ୍ୟ ସୃଷ୍ଟିରେ ମୂଳଦୁଆ ପକାଇଥିଲେ । ତାଙ୍କଦ୍ୱାରା ରଚିତ "ରେ ଆତ୍ମନ୍ ନିଦ୍ରାପରିହରି" ଭଳି ଅତି ଉଚ୍ଚମାନର ଜୀବନ ଚିନ୍ତାମୂଳକ କବିତା ଶିଶୁମାନେ ସମବେତ କଣ୍ଠରେ ଗାନ କରୁଥିଲେ । ସେଥିରୁ ଲବ୍ଧ ହେଉଥିଲା ବିବିଧ ରହ-ଶିକ୍ଷା, ଉପଦେଶ ଓ ଆନନ୍ଦ । ତାଙ୍କର ପ୍ରଣୀତ 'ବର୍ଣ୍ଣବୋଧ' ଶିଶୁଶିକ୍ଷା ପାଇଁ ଏକ ଚମତ୍କାର ସୃଷ୍ଟି ।

ଆଧୁନିକ ଭାବଧାରାରେ ଶିଶୁକୁ ଉପଯୁକ୍ତ ମାନସିକ ଖାଦ୍ୟ ପରିବେଷଣ ଆବଶ୍ୟକ । ନଚେତ୍ ତା'ର ମାନସିକ ସ୍ୱାସ୍ଥ୍ୟ ଓ ସାମାଜିକ ସ୍ଥିତି ଦୁର୍ବଳ ହୋଇଯିବ । ପୌରାଣିକ ଗଳ୍ପ ପରିବର୍ତ୍ତେ ବିଜ୍ଞାନଗଳ୍ପ, ଦୁଃସାହସିକ ଯାତ୍ରା କାହାଣୀ, ଚିତ୍ତାକର୍ଷକ ଅତ୍ୟାଧୁନିକ ବିଜ୍ଞାନସୃଷ୍ଟ ଯାନ୍ତ୍ରିକ ଚମତ୍କାରିତା ବିଷୟକ ଶିକ୍ଷାଦାନଦ୍ୱାରା ଶିଶୁର ଜିଜ୍ଞାସା ପ୍ରବୃତ୍ତି ବୃଦ୍ଧି କରିବାକୁ ହେବ । ଶିଶୁ ଜୀବନକୁ ସତ୍ତା, ସଚ୍ଚରିତ୍ର ଓ ସନ୍ନିଷ୍ଠ ରଖିବା ନିମନ୍ତେ ବୈଦିକ ଶିକ୍ଷା-"ଯଜ୍ଞଂଦଧେ ସରସ୍ୱତୀ" (୨୩), ଅର୍ଥାତ୍ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀଙ୍କ କୃପାରୁ ହିଁ ସତ୍ୟଦର୍ଶନ, ସତ୍‌ସଙ୍କଳ୍ପ, ସଦ୍‌ଭାବ ଓ ସଦିଚ୍ଛା ପ୍ରବାହର ଅଭିବୃଦ୍ଧି ଘଟେ । ଆଜି ଏ ଚିନ୍ତା ଆଉ କରୁଛି କିଏ ? ବିନୋବାଜୀଙ୍କ ଉକ୍ତିରେ:-"ଗୁରୁମାନେ ଛାତ୍ର ପରାୟଣ, ଛାତ୍ରମାନେ ଗୁରୁପରାୟଣ ଏବଂ ଉଭୟ ବିଦ୍ୟା ପରାୟଣ ହେବା ଉଚିତ" । ଏ ଔଚିତ୍ୟବୋଧ ଏ ଯୁଗରେ କେତେଦୂର ଆଶା କରାଯାଇପାରେ ବିଚାର୍ଯ୍ୟ ।

ଆମର ଆଜି ଏକ ଶିଳ୍ପୋନ୍ନତ ଦେଶ । ବୈଷୟିକ ସମୃଦ୍ଧିରେ ଆମେ ମାତାଲ । ସାଂସ୍କୃତିକ ପ୍ରଗତିର ଢଙ୍କାପିଟା ଅନବରତ ଚାଲିଛି । ସଭ୍ୟ ଜଗତରେ ଆମେ ଖୁବ୍ ଉର୍ଦ୍ଧ୍ୱକୁ ମୁଣ୍ଡ ଟେକିପାରିଛୁଁ । 'ପ୍ରଗତିଶୀଳ' ନାମରେ ନବଯୁଗ ବିଶେଷିତ । ଜୟଯାତ୍ରା ଅପ୍ରତିହତ । ତଥାପି ପ୍ରାଚୀନ ମୂଲ୍ୟବୋଧ ଅନ୍ତତଃ ପୃଷ୍ଠଭୂମି ହେଉ ଏକବିଂଶ ଶତାବ୍ଦୀକୁ ଯାତ୍ରାର ପ୍ରଥମ ପାଦରେ ।

**ପାଦଟୀକା :**

(୧) ଛି.ଭି: ୩/୧
(୨) ନାନାର୍ଥ ବର୍ଗ ; ୪୭୮
(୩) ମନୁଷ୍ୟ ବର୍ଗ ; ୧୬୮
(୪) ଋକ୍ : ବେଦ ୬/୨୨/୧
ତୈତ: ଉପ: ଅ ୨/୪

(୫) କଠ: ଉପନିଷଦ୍

(୬) ତୈତ୍ତି: ଉପ: ଶିକ୍ଷାବଲ୍ଲୀ ଅନୁ: ୪

(୭) ତତ୍ରୈବ

(୮) ଯଜୁ: ଅଃ ୧୯/୯

(୯) ମନୁ ୪/୨୩୩

(୧୦) କଠ:ଉପ: ୨/୩/୧୪

(୧୧) ଐତ:ଉପ:ଶାନ୍ତିପାଠ

(୧୨) ଶ୍ରୀମଦ୍ ଗୀତା ୧୮/୪୬

(୧୩) ବରଣା:ଉପ:ମନ୍ତ୍ର ୧

(୧୪) ଶ୍ରୀମଦ୍ ଗୀତା ୧୦/୪୧

(୧୫) ତୈତ୍ତି:ଉପ:ଶିକ୍ଷା:ଅନୁ ୧

(୧୬) ମୁଣ୍ଡ:ଉପ:ଶାନ୍ତିପାଠ

(୧୭) ସାମ:ଉ:୧/୨/୩

(୧୮) ତୈ:ଉପ:ଅନୁ: ୧୧

(୧୯) ତତ୍ରୈବ

(୨୦) ଯଜୁ: ୧/୪୫

(୨୧) ସତ୍ୟାର୍ଥ ପ୍ରକାଶଃ ; ୩ୟ ସମୁଲ୍ଲାସ

(୨୨) ବା:ରା:ଅଯୋଧ୍ୟାକାଣ୍ଡ ୧୦୯/୨୩

(୨୩) ଋକ୍:ବେଦ: ୧/୩/୧୧



ଶେଷ ନିବାସ,

୪୨୪/ ଶହୀଦ୍ ନଗର, ଭୁବନେଶ୍ୱର-୭ ।




କେନ୍ଦୁଝରଠାରେ ଅନୁଷ୍ଠିତ 'ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ' ଶୀର୍ଷକ ସଭାରେ ଗ୍ରାମ୍ୟ ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସହରାଇ ଓରାମ୍ ଉଦ୍‌ବୋଧନ ଦେଉଛନ୍ତି (୧୪/୧୧) ।

# ପ୍ରାଚୀନ ସାହିତ୍ୟରେ ସମାଜ ଓ ବ୍ୟକ୍ତି ଚରିତ୍ର

**ଶ୍ରୀ ଲାବଣ୍ୟଚନ୍ଦ୍ର ସାହୁ**

ଏବେ ଆମ ଆଗରେ ଆର୍ଥିକ ସମସ୍ୟା ହିଁ ଗୁରୁତର ପରିସ୍ଥିତି ସୃଷ୍ଟି କରିଛି । ଅଭାବ, ଅନଟନ, ଦାରିଦ୍ର୍ୟ, ଅହରହ ମାନସିକ ଗ୍ଲାନି ତଥା ସନ୍ତାପ ମଧ୍ୟରେ ବ୍ୟକ୍ତିଠାରେ କିପରି ଚରିତ୍ରନିଷ୍ଠା ବଜାୟ ରହିବ; ଏହା ସନ୍ଦିଗ୍ଧ ହୋଇ ପଡ଼ିଛି । ଏକଥା ସତ ଯେ ପୁରାତନ କାଳରେ ଯେ–ବନ୍ୟା, ବାତ୍ୟା, ମରୁଡ଼ି ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ତଥା ଅଭାବ ଅନଟନ ସାମାଜିକ ବୈଷମ୍ୟ ଓ ବିଦ୍ୱେଷ ମଧ୍ୟ କେତେକ ମାତ୍ରାରେ ଥିଲା । ଏହାସତ୍ତ୍ୱେ ଭାରତର ସଂସ୍କୃତ ସାହିତ୍ୟ ବାଙ୍ମୟତାର ସ୍ପଷ୍ଟ ଅନୁଭୂତ ହୁଏ ଯେ ଅନେକ ବାଧା, ବିଘ୍ନ, ଘାତ–ପ୍ରତିଘାତ ସାମାଜିକ ପ୍ରତିବନ୍ଧକ ମଧ୍ୟରେ ବ୍ୟକ୍ତି ଚରିତ୍ରରେ ସଦାଚାର ତଥା ନୁଶୃଙ୍ଖଳତା ବଜାୟ ରଖିବା ତତ୍କାଳୀନ ରାଷ୍ଟ୍ରୀୟ ନୀତି ଥିଲା ।

ବେଦ, ଉପନିଷଦ୍, ପୁରାଣ, ନୀତିକଥାଗୁଡ଼ିକରେ "ସଦାଚରଣ"ର ବିଶଦ୍ ବ୍ୟାଖ୍ୟା କରାଯାଇଛି । ବ୍ୟକ୍ତିଠାରେ ନିହିତ ସଦ୍‌ଗୁଣ (Virtue) ତଥା ଦୁର୍ଗୁଣ (vice)ର ପାର୍ଥକ୍ୟ ଦର୍ଶାଇ ଦିଆଯାଇଛି । ସମାଜକୁ ସୁଶୃଙ୍ଖଳିତ, ସୁବ୍ୟବସ୍ଥିତ କରିବା ନିମିତ୍ତ ବ୍ୟକ୍ତି ଚରିତ୍ର; ରାଷ୍ଟ୍ରୀୟ ସମ୍ପତ୍ତି ଭାବରେ ପରିଗଣିତ ହେଉଥିଲା । ବ୍ୟକ୍ତିକୁ ନେଇ ପରିବାର, ପରିବାରକୁ ନେଇ ସମାଜ ତଥା ସମାଜକୁ ନେଇ ରାଷ୍ଟ୍ରଗଠନ ହୁଏ । ଏଣୁ ବ୍ୟକ୍ତିର ଚରିତ୍ରଗୁଣରୁ ସମାଜ ପରିପୁଷ୍ଟ, ସୁଶୃଙ୍ଖଳ ତଥା ସୁରକ୍ଷିତ ହେଉଥିଲା । ପ୍ରାଚୀନକାଳରେ "ସଦାଚରଣ"କୁ ହିଁ ଧର୍ମ ବୋଲି ଅଭିହିତ କରାଯାଉଥିଲା । ମନୁସ୍ମୃତିରେ "ଆଚାରଃ ପରମୋ ଧର୍ମଃ" ; ମହାଭାରତରେ– "ଆଚାରଃ ପ୍ରଥମୋ ଧର୍ମଃ" । "ଆଚାର ଲକ୍ଷଣୋ ଧର୍ମଃ" ବଶିଷ୍ଠ ସ୍ମୃତିରେ "ପରମାଚାରେ ହି ଧର୍ମଃ"–ଏହାର ଦୃଷ୍ଟାନ୍ତ ଅଟେ ।

ସଦାଚାରୀ ବ୍ୟକ୍ତିଠାରେ – ନିର୍ଭୟତା, ସଙ୍କଳ୍ପଶକ୍ତି, ନୈତିକତା, ମାନସିକ ଦୃଢ଼ତା, ଆତ୍ମବିଶ୍ୱାସ, କର୍ତ୍ତବ୍ୟ – ପରାୟଣତା, ଦୂର ଦର୍ଶିତା, ସ୍ୱାବଲମ୍ବନଶୀଳତା, ସହନଶୀଳତା, ବିବେକଶୀଳତା ଆଦି ମହତ୍‌ଗୁଣ ମହଜୁଦ୍ ଥାଏ । ଇତିହାସ କହିବ – ମହାନ୍ ଚରିତ୍ରଶୀଳ ବ୍ୟକ୍ତି – ଭଗବାନ୍ ଗୌତମ ବୁଦ୍ଧ, ମହାବୀର, ଶଙ୍କରାଚାର୍ଯ୍ୟ, କବୀର, ଶ୍ରୀଚୈତନ୍ୟ ଏବଂ ରାଷ୍ଟ୍ରନେତା ମହାତ୍ମାଗାନ୍ଧୀ, ବିନୋବା ଭାବେ, ଟଲଷ୍ଟୟ, ଆଇନ୍ ଷ୍ଟାଇନ୍, ପ୍ଲାଟୋ, ସକ୍ରେଟିସ୍ ଏପରିକି ପୌରାଣିକ ଚରିତ୍ର ରାଜା ହରିଶ୍ଚନ୍ଦ୍ର ଆଦି କୋଟି ଜନମାନସରେ ଉଦ୍‌ଜୀବିତ ଅଛନ୍ତି ।

ବ୍ୟକ୍ତିର ଆଚରଣ, ହାବଭାବ, ଅଙ୍ଗ–ଭଙ୍ଗୀ ପ୍ରଦର୍ଶନ, ରଙ୍ଗ–ଢ଼ଙ୍ଗ କଥାବାର୍ତ୍ତାରୁ ହିଁ ତାହାର ଚରିତ୍ର ମୂଲ୍ୟାୟନ କରିହୁଏ । ମହାଚାରୀର କେତୋଟି ଲକ୍ଷଣ ହେଲା– ଗୁରୁଜନଙ୍କୁ ପ୍ରଣାମ, ମୃଦୁ ଭାଷଣ, କରମର୍ଦ୍ଦନ, ବିନୟତ, ରୋଗୀ ସେବା, ଅନ୍ନ ବସ୍ତ୍ର ଯଥା ସାହାଯ୍ୟ କରି ଅସହାୟର ସହାୟତା କରିବା, ଅନ୍ୟାୟର ପ୍ରତିରୋଧ, ବିଦ୍ୟାଦାନ, ସମୟାନୁବର୍ତ୍ତିତା, ଦୂରଦର୍ଶିତା, ସହନଶୀଳତା ତଥା ସତ୍ୟଭାଷଣ । ଯେ ହେତୁ ସଦାଚରଣକୁ ମାନବୀୟ ଧର୍ମ ଭାବରେ ମନୁ ଗ୍ରହଣ କରିଛନ୍ତି ତେଣୁ ସଦାଚାରୀଠାରେ ଦଶୋଟି ଲକ୍ଷଣକୁ ସେ ଚିହ୍ନଟ କରିପାରିଛନ୍ତି ।

ଧୃତି, କ୍ଷମା, ଦମୋଽସ୍ତେୟଂ ଶୌଚମିନ୍ଦ୍ରିୟ ନିଗ୍ରହଃ ।
ଧୀର୍ବିଦ୍ୟା ସତ୍ୟମକ୍ରୋଧ ଦଶକଂ ଧର୍ମଲକ୍ଷଣମ୍

(ମନୁସ୍ମୃତି)

ବାମନ ପୁରାଣରେ ସଦାଚାରୀ ବ୍ୟକ୍ତିର ସଦ୍‌ଗୁଣ ସମ୍ବନ୍ଧରେ ବର୍ଣ୍ଣନା ଦିଆଯାଇ କୁହାଯାଇଛି ।

"ସ୍ୱାଧ୍ୟାୟୋ ବ୍ରହ୍ମଚର୍ଯ୍ୟ ଚ ଦାନଂ ଯଜନବେ ଚ
ଅକାର୍ପଣ୍ୟମନାୟାସୋ ଦୟା ହିଂସାକ୍ଷମାଦୟଃ ।
ଜିତେନ୍ଦ୍ରିୟତ୍ୱଂ ଶୌଚଂ ଚ ମାଙ୍ଗଲ୍ୟଂ ଭକ୍ତିରୁଚ୍ୟତେ"

ଅର୍ଥାତ୍ ସଦାଚାରୀଠାରେ ସ୍ୱାଧ୍ୟାୟ, ବ୍ରହ୍ମଚର୍ଯ୍ୟ, ଦାନ, ଯଜ୍ଞ, ଅକୃପଣତା, ସରଳତା, ଦୟା, ଅହିଂସା, କ୍ଷମା, ଜିତେନ୍ଦ୍ରିୟତା, ଶୌଚତା, ସର୍ବାସିଦ୍ଧି, ମଙ୍ଗଳକାମନା, ତଥା ଈଶ୍ୱର ଭକ୍ତି ଥିବା ବିଧେୟ ।

ବିଷ୍ଣୁ ପୁରାଣରେ ମହର୍ଷି ପରାଶର କହନ୍ତି –
"ଶ୍ରୂୟତାଂ ପୃଥ୍ବୀପାଳ ସଦାଚାରସ୍ୟ ଲକ୍ଷଣମ୍ ।
ସଦାଚାର ରତା ପୁଂସା ଜିତୌ ଲୋକାବୁଭାବପି ।

× × × ×

"ସାଧବଃ କ୍ଷୀଣଦୋଷାସ୍ତୁ ସଚ୍ଛବ୍ଦଃ ସାଧୁବାଚକଃ

ତେଷାମାଚରଣଂ ଯତ୍ତୁ ସଦାଚାରଃ ସ ଉଚ୍ୟତେ ।"

ଅର୍ଥାତ୍ ସଦାଚାରରେ ଥିବା ସଦ୍ ଶବ୍ଦ ସଜ୍ଜନ ଅଥବା ସାଧୁ ବାଚକ ଅଟେ । ଅର୍ଥାତ୍ ସଜ୍ଜନ ପୁରୁଷର ଆଚରଣ ହିଁ ସଦାଚାର ଅଟେ । ଦୋଷ ତ୍ରୁଟି ବିହୀନ ବ୍ୟକ୍ତି ହିଁ ସଦାଚାରୀ ଅଟେ ।

ଭଗବତ୍ ଗୀତାରେ ମଧ୍ୟ ସଦାଚାରୀ ବ୍ୟକ୍ତିର ସଂଜ୍ଞା ନିରୂପଣ କରି ଯଥାର୍ଥରେ କୁହାଯାଉଛି ଯେ- ଭୟଶୂନ୍ୟତା, ଜ୍ଞାନ ଓ ଯୋଗଯୁକ୍ତମନ, ଦାନଶୀଳତା, ସ୍ୱାଧ୍ୟାୟ, ତପ, ଅହିଂସା, ସତ୍ୟ ଭାଷଣ, କ୍ରୋଧ ଶୂନ୍ୟତା, ତ୍ୟାଗ ପରାୟଣତା, ଶାନ୍ତ ମନଃସ୍ଥିତି, ନିଷ୍କପଟତା, ପ୍ରାଣୀପ୍ରତି ସହୃଦୟତା, ଚୌର୍ଯ୍ୟହୀନତା, ତେଜ, ଧୈର୍ଯ୍ୟ, କ୍ଷମା., ଶୌର୍ଯ୍ୟ, ଅଦ୍ରୋହ, ନିରଭିମାନତା ଏସବୁ ଚରିତ୍ର ନିଷ୍ଠାର ଉପାଦାନ ।

"ମହାଭାରତ"ରେ ମଧ୍ୟ "ଶୀଳତା" ଉପରେ ଯୋର୍ ଦିଆଯାଇଛି ।

"ଧର୍ମଃ , ସତ୍ୟଃ , ତଥା ବୃତ୍ତଂ ବଳଂ ଚୈବ ତଥାପ୍ୟହମ୍ ।

ଶୀଳମୂଳା ମହାପ୍ରାଜ୍ଞ ସଦା ନାସ୍ତ୍ୟତ୍ର ସଂଶୟଃ ।"

ମନ-ବାକ୍ୟ ତଥା କର୍ମରେ ସବୁପ୍ରାଣୀ ପ୍ରତି ଅଦ୍ରୋହ, ଅନୁଗ୍ରହ ପ୍ରଦର୍ଶନ ତଥା ଅନୁଦାନ ବ୍ୟବସ୍ଥାକୁ ଶୀଳତା କୁହାଯାଇଥାଏ ।

"ନିଘର୍ଷଣ-ଛେଦନ-ତାପ- ତଥା ତାଡ଼ନ ବିଧିରେ ଯେପରି ସ୍ୱର୍ଣ୍ଣର ମୂଲ୍ୟାୟନ କରାଯାଏ ; ସେହିପରି ସଦାଚାରୀର ଚରିତ୍ରନିଷ୍ଠାକୁ ତାହାର "କୁଳ-ଶୀଳ-ବିଦ୍ୟା ତଥା କର୍ମ'ରୁ ନିର୍ଦ୍ଧାରଣ କରାଯାଇଥାଏ ବୋଲି ଚାଣକ୍ୟ ନୀତିରେ କୁହାଯାଇଛି । ଯଥା:-

"ଚତୁର୍ଭିଃ କନକ ପରୀକ୍ଷ୍ୟତେ

ନିର୍ଘଷଣ-ଛେଦନ-ତପ-ତାଡ଼ନୈଃ

ତଥା ଚତୁର୍ଭିଃ ପୁରୁଷଃ ପରୀକ୍ଷ୍ୟତେ

ଶ୍ରୁତେନ ଶୀଳେନ କୁଳେନ କର୍ମଣା ।

ଜୀବନକୁ ସମୃଦ୍ଧ ତଥା ପୁଷ୍କଳ କରିବାକୁ କହିଲେ ଚରିତ୍ରରେ ଉପର୍ଯ୍ୟୁକ୍ତ ସଦଗୁଣ ତଥା ପୁରୁଷାର୍ଥ ରହିବା ଏକାନ୍ତ ଆବଶ୍ୟକ ।

ଉତ୍ତମ ଚରିତ୍ର ଯୁକ୍ତ, ନିଷ୍ଠାପର, ତଥା ସୁଶୃଙ୍ଖଳିତ ନାଗରୀକଙ୍କୁ ନେଇ ରାଷ୍ଟ୍ର ସମୃଦ୍ଧ ହୁଏ । ଯେଉଁ ଦେଶର ନାଗରୀକ ଯେତେ ପରିମାଣରେ ପରିଶ୍ରମ, କର୍ମକୁଶଳ, ବିବେକଶୀଳ, ଅଧ୍ୟବସାୟୀ ତଥା ଦୂରଦର୍ଶୀ ସେହି ଦେଶ ସେହି ପରିମାଣରେ ଉନ୍ନତ, ସମୃଦ୍ଧ ତଥା ପ୍ରଗତିଶୀଳ ।

ଉପନିଷଦ୍‌ଗୁଡ଼ିକରେ ନିହିତ ସଦୁପଦେଶଗୁଡ଼ିକ ସର୍ବଦା ମାର୍ଗ ନିର୍ଦ୍ଦେଶ କରି ଆସିଛି ।

"ସତ୍ୟଂ ବଦ । ଧର୍ମଂ ଚର । ସ୍ୱାଧ୍ୟାୟାନ୍ମାପ୍ରମଦଃ ।
ମାତୃଦେବ ଭବ । ପିତୃଦେବ ଭବ ।ଆଚାର୍ଯ୍ୟଦେବ
ଭବ । ଅତିଥି ଦେବ ଭବ । ଶ୍ରଦ୍ଧୟା ଦେୟମ ।"

(ତୈତ୍ତିରୀୟୋପନିଷଦ୍)

ରାଷ୍ଟ୍ରୀୟ ଚରିତ୍ରକୁ ଦୋଷ ମୁକ୍ତ, ନିର୍ମଳ ତଥା ପବିତ୍ର ରଖିବାକୁ ବେଦର ବାଣୀ ଅହରହ ଆମ କାନରେ ମୁଖରିତ ହେଉଛି । ଯଥା:-

ଅକ୍ଷୈର୍ମା ଦୀବ୍ୟଃ (ଋକ୍ ବେଦ)- ଜୁଆ ଖେଳ ନାହିଁ । ନ ପରସ୍ତ୍ରିୟ ମୁପେୟାତ୍ (ତୈତ୍ତିରୀୟ-) ପରସ୍ତ୍ରୀ ସଙ୍ଗ କର ନାହିଁ । ମା ହିଂସୋଃ ପୁରୁଷାନ୍ ପଶୂନ୍ଶ୍ଚ (ଅଥର୍ବ) ଉଭୟ ମନୁଷ୍ୟ ଓ ପଶୁଙ୍କୁ କଷ୍ଟ ଦିଅ ନାହିଁ । ନ ସୁରାଂ ପିବେତ୍ (ତୈତ୍ତିରୀୟୋ) ମଦ୍ୟପାନ କର ନାହିଁ । ମା ଗୃଧଃ କସ୍ୟସ୍ୱିଦ୍ ଧନମ୍ (ଯଜୁ) ଅପର ଧନରେ ଲୋଭ କର ନାହିଁ । ଇତ୍ୟାଦି ।

ସମାଜକୁ ପରିପୁଷ୍ଟ କରିବା ପାଇଁ ବ୍ୟକ୍ତିତ୍ୱରେ ଯେଉଁ ଚରିତ୍ର ନିଷ୍ଠାର ଆବଶ୍ୟକତା ପଡ଼େ- ସେଥିପାଇଁ ବେଦ ତିନୋଟି ସାଧନର ଉଲ୍ଲେଖ ଅଛି ଯଥା:- କର୍ମ, ଉପାସନା ଓ ଜ୍ଞାନ । ଅନ୍ତଃକରଣ ନିଷ୍କଳଙ୍କ ହେବା ଯାଏ, ଭାବନା ଓ କର୍ମରେ ତା' ପ୍ରତିଫଳିତ ହେବନାହିଁ ।

ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା
ଭଦ୍ରଂ ପଶ୍ୟେମାକ୍ଷଭି ର୍ଯଜତ୍ରାଃ
ସ୍ଥିରୈରଙ୍ଗୈସ୍ତୁଷ୍ଟୁବାଂ ସସ୍ତନୂଭି
ବ୍ୟଶେମ ଦେବାହିତଂ ଯଦାୟୁଃ ।

ଅର୍ଥାତ୍- ଆମେ କାନରେ କେବଳ ମଙ୍ଗଳକଥା ଶୁଣିବୁ । ଆଖି ଆଦି ଇନ୍ଦ୍ରିୟରେ କେବଳ ଭଲ ଜିନିଷ ହିଁ ଦେଖିବୁ ଏବଂ ଅନୁଭବ କରିବୁ । ନିଜର ଦୃଢ଼ ଅଙ୍ଗରେ, ସୁଦୃଢ଼ ଶରୀରରେ ସର୍ବଦା ସ୍ତୁତିପୂଜା କରି ଈଶ୍ୱର ପ୍ରଦତ୍ତ ଆୟୁକୁ ପ୍ରାପ୍ତ କରିବୁ ।

ଏହିପରି ଶୁଭକାମନାରୁ ବ୍ୟକ୍ତିର ଭାବନାରେ ନିହିତ ପବିତ୍ରତାର ସଙ୍କେତ ମିଳେ ।

ଏକତା ଉପରେ ଦେଶର ସଂହତି ନିର୍ଭର କରେ । ବେଦ କହେ - ସଂ ଗଚ୍ଛଧ୍ୱଂ ସଂ ବଦଧ୍ୱମ ।"

ଅର୍ଥାତ୍ ମିଳିତ ଭାବରେ ଚାଲ- ମିଳିତ ଭାବରେ କୁହ । ଦେଶର ନେତୃତ୍ୱ ସମ୍ବନ୍ଧରେ ବେଦ କହେ-. "ବୟଂ ରାଷ୍ଟ୍ରେ

ରାଷ୍ଟ୍ରେଯାମ ପୁରୋହିତାଃ (ଯଜୁଃ) ଅର୍ଥାତ୍ ଆମେ ଆପଣା ଦେଶରେ ସାବଧାନ ହୋଇ ପୁରୋହିତ (ନେତା) ଭାବରେ ଜାଗ୍ରତ ହେବା । ବ୍ୟକ୍ତିତ୍ୱକୁ ଜାଗ୍ରତ ତଥା ଆତ୍ମଶକ୍ତିର ଅଭିବୃଦ୍ଧି ନିମିତ୍ତ ପ୍ରୋତ୍ସାହିତ କରି କୁହାଯାଇଛି– "ଯଶଃ ଶ୍ରୀଃ ଶ୍ରୟତାଂ ମୟି !" ଅର୍ଥାତ୍ "ଯଶ ଏବଂ ଐଶ୍ୱର୍ଯ୍ୟ ମୋ ଭିତରେ ମହଜୁଦ୍ ଅଛି ।" ଭୂତେ ଜାଗରଣମ୍" ଅଭୂତେ ସ୍ୱପ୍ନମ୍ (ଯଜୁଃ) ଅର୍ଥାତ୍–ଜାଗରଣ ଐଶ୍ୱର୍ଯ୍ୟ ପ୍ରଦ । ନିଦ୍ରା (ଆଳସ୍ୟ) ଦରିଦ୍ରତାର ମୂଳ କାରଣ । 'ଆରୋହଣ ମାକ୍ରମଣଂ ଜୀବତୋ ଜୀବତୋଽୟନମ୍'– ଅର୍ଥାତ୍–ଉନ୍ନତ ହେବା ଏବଂ ଅଗ୍ରଗାମୀ ହେବା–ପ୍ରତ୍ୟେକ ଜୀବର ଲକ୍ଷ୍ୟ । "ଶତ ହସ୍ତ ସମାହାର–ସହସ୍ର ହସ୍ତ ସଂ କରି– (ଅଥର୍ବ)" ଅର୍ଥାତ୍ ଶହେ ହାତରେ ଏକାଠି କଲେ – ହଜାର ହାତରେ ବାଣ୍ଟି ଦିଅ ।

ଚରିତ୍ରନିଷ୍ଠ ନାଗରୀକଙ୍କୁ ନେଇ ଦେଶ ସମୃଦ୍ଧ ପଥରେ ଆଗେଇ ଯାଏ । ଚରିତ୍ରରେ କଳଙ୍କ ପଶିଗଲେ ବ୍ୟକ୍ତି ଦୁର୍ବ୍ୟସନ ଗ୍ରସ୍ତ ହୋଇଯାଏ । ଆଳସ୍ୟ, ମୁନଫାଖୋରୀ, କଳାବଜାରୀ, ଜୁଆଖେଳୀ, ଲମ୍ପଟତା, ଅସଦାଚରଣ, ଏସବୁ ଚରିତ୍ରଗତ ତ୍ରୁଟି ପାଇଁ କିଏ ଦାୟୀ ? ବ୍ୟକ୍ତିର ଚରିତ୍ରରେ ସାର୍ବଜନୀନ ତଥା ବିଶ୍ୱାସିକ ଭାବନା ପରିବର୍ତ୍ତେ ସଂକୀର୍ଣ୍ଣ ସ୍ୱାର୍ଥପରତା ଉଙ୍କୁଟି ଉଠିଛି ।

ଅବାଧ ଓ ମୁକ୍ତ ସମାଜଗଠନ ଆମର କାମ୍ୟ ହେଉ । 'ଉତିଷ୍ଠ ଜାଗ୍ରତ ପ୍ରାପ୍ୟ ବରାନ୍ନି ବୋଧତ'– ଉଠ ! ଜାଗ ଓ ଶ୍ରେଷ୍ଠତ୍ୱ ଲାଭ କର ।

---

Pay & Accounts Officer,
At/P.O.–Talcher Thermal,
Pin–759101




ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ, ଶ୍ରୀ ଶରତ କୁମାର କର ରାଉରକେଲାଠାରେ କାର୍ଯ୍ୟକାରୀ ସାମ୍ବାଦିକ ସଙ୍ଘର ଏକ ପତ୍ରିକା ଉଦ୍‌ଘାଟନ କରୁଛନ୍ତି ।

# ଗୋଟିଏ ଦେଶ ଗୋଟିଏ ଜାତି

ମୂଳ ରଚନା : କେ: ଏମ୍: ମୁନସୀ
*ଅନୁଲେଖନ : ଚନ୍ଦ୍ରଶେଖର ମହାପାତ୍ର*

ସଂସ୍କୃତି ଆଉ ସଭ୍ୟତା ଭିତରେ ପାର୍ଥକ୍ୟ ରହିଛି । ଆମେ ଯେଉଁ ପୋଷାକ ପରିଧାନ କରୁଛୁ, ଯେଉଁ କଳ କାରଖାନା ବସାଉଛୁ ଯେଉଁ ସେତୁ ନିର୍ମାଣ କରୁଛୁ ଏ ସବୁ ସଭ୍ୟତାର ଅଂଶ ବିଶେଷ । ବିଜ୍ଞାନର ପ୍ରଗତିଲବ୍ଧ ଜୀବନର ବସ୍ତୁତାନ୍ତ୍ରିକ ଉପକରଣ, ଯାହାକି ଜଟିଳତା ବଢ଼ାଇଚାଲେ । କିନ୍ତୁ ସଂସ୍କୃତିର ପ୍ରଥମ ଲକ୍ଷଣ ହେଉଛି ନୀରବଚ୍ଛିନ୍ନତା । ଏହା ଅତୀତରୁ ଆସେ, ବର୍ତ୍ତମାନରେ ନିଜକୁ ଖାପଖୁଆଏ ଏବଂ ଭବିଷ୍ୟତକୁ ରୂପ ଦେବା ପାଇଁ ଆଗେଇଚାଲେ ।

ସଂସ୍କୃତିମାନଙ୍କର ଇତିହାସ ଅନୁଧ୍ୟାନ କଲେ ଦେଖାଯିବ – ମୌଳିକ ମୂଲ୍ୟବୋଧ ଦୃଷ୍ଟିରୁ ସେହି ସବୁ ବିଶେଷତ୍ୱ ପରସ୍ପର ସହିତ ସମ୍ପୃକ୍ତ ରହି ପୁଣି ସାମର୍ଥ୍ୟ ସହିତ ପରିବର୍ତ୍ତିତ ପରିସ୍ଥିତିରେ ନିଜକୁ ଖାପ ଖୁଆଇ ନେଇଥାଏ ।

ବୈଦିକ ସଂସ୍କୃତି ଉପରେ ଆଧାରିତ ଭାରତୀୟ ସଂସ୍କୃତିର ମୌଳିକ ନିର୍ଯ୍ୟାସ ହେଉଛି ଋତ (The Cosmic order)ଏହା ଏକ ଏବଂ ଅବିଚ୍ଛେଦ୍ୟ । ବସ୍ତୁତାନ୍ତ୍ରିକ ନୈତିକ ତଥା ଆଧ୍ୟାତ୍ମିକ ପର୍ଯ୍ୟାୟ ସବୁରେ କ୍ରିୟାଶୀଳ ରହି ସୃଷ୍ଟିର ନୀରବଚ୍ଛିନ୍ନତା ଏବଂ ବିବର୍ତ୍ତନକୁ ନିୟନ୍ତ୍ରିତ କରିଚାଲିଛି ।

ଈଶ୍ୱର ବିଶ୍ୱାସ ହେଉଛି ଆମ ସଂସ୍କୃତିର ମୌଳିକ ନିର୍ଯ୍ୟାସ । ଗୀତାରେ ଶ୍ରୀକୃଷ୍ଣଙ୍କର ଉକ୍ତି ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାନ୍ ତଥୈବ ଭଜାମ୍ୟହମ୍ ହେଉଛି ଭାରତୀୟ ସଂସ୍କୃତିର ଧର୍ମ ବିଷୟକ ସମ୍ପ୍ରସାରିତ ତଥା ଉଦାର ଭାବଧାରା ଯାହାକି ସବୁ ବିଶ୍ୱାସକୁ ସମ୍ମାନ ଦିଏ ।

ସତ୍ୟ ବା ଧାର୍ମିକ ଜୀବନଯାତ୍ରା ହେଉଛି ଋତର ସେହି ଗୁଣ ଯାହା ଅଭୀପ୍ସା ସିଦ୍ଧି ପାଇଁ ଚରିତ୍ରକୁ ସାମର୍ଥ୍ୟ ଯୋଗାଇଥାଏ ।

ଆର୍ଷ ମତରେ ସୃଷ୍ଟିର ପ୍ରାକ୍ କାଳରେ ତପରୁ ଋତ ବେଂ ସତ୍ୟର ଜନ୍ମ । ତପ ହେଉଛି ଉଚ୍ଚତର ଜୀବନର ଚାବିକାଠି । ତପ ଜନିତ ଆତ୍ମସଂଯମ ଦ୍ୱାରା ଦେହ ଏବଂ ମନର ଶୁଦ୍ଧତା ଆସିଥାଏ । ଏହି ମୌଳିକ ଚିନ୍ତାଧାରା ଆମ ସଂସ୍କୃତିର ଜୀବନ ପ୍ରବାହ ଭିତରେ ସୁନା ସୂତାଟିଏ ଭଳି ଲସି ଯାଇଛି । ଭାରତୀୟ ସଂସ୍କୃତିର କ୍ରମ ବିବର୍ତ୍ତନ ବିଷୟରେ ଅଧ୍ୟୟନ କରି ବସିଲେ ତାହା ସ୍ପଷ୍ଟ ହୋଇଉଠେ ।

ନବଦମ୍ପତିଙ୍କୁ ଆଶୀର୍ବାଦ ଦେଇ ଅଥର୍ବ ବେଦ କହେ ତୁମେ ଦୁହେଁ ଅବିଚ୍ଛିନ୍ନ ରହି ଘରେ ପୁଅ ନାତିଙ୍କ ଗହଣରେ ଖେଳି ପୂର୍ଣ୍ଣ ଜୀବନ ଯାପନ କର ।

ବିବାହର ପବିତ୍ରତା ପାରିବାରିକ ବନ୍ଧନକୁ ଦୃଢ଼ କରେ । ପତିବ୍ରତା ନାରୀକୁ ସେଥିପାଇଁ ଦେବତାଙ୍କ ସହିତ ତୁଳନା କରାଯାଇଥାଏ । ଉପନିଷଦ ଆଶୀର୍ବାଦ ଦେଇ କହେ ପିତା ତୁମ ପାଇଁ ଦେବତୁଲ୍ୟ ହୁଅନ୍ତୁ । ମାତା ତୁମପାଇଁ ଦେବତୁଲ୍ୟ ହୁଅନ୍ତୁ ।

ବୈଦିକ ଆର୍ଯ୍ୟ ସଂସ୍କୃତିରେ ଆଚାର୍ଯ୍ୟର ସ୍ଥାନ ବହୁ ଉର୍ଦ୍ଧ୍ୱରେ । ସେ ଖାଲି ଶିକ୍ଷକ ନୁହେଁ, ସେ ତା'ର ଶିଷ୍ୟମାନଙ୍କର ଆଧ୍ୟାତ୍ମିକ ପିତାମାତା ମଧ୍ୟ । ସେଥିପାଇଁ ଆଚାର୍ଯ୍ୟଙ୍କୁ ଦେବତାଭଳି ସମ୍ମାନ ଦିଆଯାଏ । ଏହି ଭାବରେ ଗୁରୁ ପରମ୍ପରାର ସୃଷ୍ଟି । ଆଧ୍ୟାତ୍ମିକ ଧାରା ଶିକ୍ଷକରୁ ଛାତ୍ର ପୁଣି ତା ଛାତ୍ର ଏହି ଭଳି ଭାବରେ ପ୍ରବାହିତ ହୋଇଚାଲେ ।

ବେଦହିଁ ଭାରତୀୟ ସଂସ୍କୃତିର ଭିତ୍ତିଭୂମି । ସମସ୍ତ ପରିସ୍ଥିତିକୁ ଯେତେ ଭିନ୍ନରୂପ ଦେଇ ଚାଲିଲେ ବି ବୈଦିକ ଭାବଧାରା ଲୋକାଚାରକୁ ନିୟନ୍ତ୍ରିତ କରିବାର ପ୍ରେରଣା ଯୋଗାଇ ଚାଲିଛି । ତାମିଲ ନଡ଼, କେରଳ, ଗୌହାଟି, ହରଦ୍ୱାର, ବନାରସ, ପୁରୀ, ବମ୍ବେ, କଲିକତାର ସହରାଞ୍ଚଳ ହେଉ ବା ଗ୍ରାମାଞ୍ଚଳ ସବୁଠି ବେଦବାଣୀ ଧ୍ୱନୀତ ହେଉଛି । ବୈଦିକ ବିଚାର ପ୍ରଭାବ ପକାଉଛି । ସୁଦୂର ଅତୀତରୁ ମହାନ୍ ବୈଦିକ ଋଷିମାନଙ୍କର ଅନୁଗାମୀଗଣ ଆର୍ଯ୍ୟ ସଂସ୍କୃତିକୁ ପ୍ରସାରିତ କରିଆସିଛନ୍ତି ।

ପ୍ରାରମ୍ଭରୁ ବହୁ ଆଗମନ ପ୍ରତ୍ୟାଗମନ ମାଧ୍ୟମରେ ବହୁ ଜାତି ସମ୍ମିଳିତ ହୋଇଯାଇଛନ୍ତି । ସେମାନଙ୍କର ଆଚାର ବିଶ୍ୱାସ ନୂତନ ସମନ୍ୱୟ ସୃଷ୍ଟି କରିଛି ।

ଆର୍ଯ୍ୟ, ନାଗ, ଅସୁର ଆଦି ଜାତିମାନେ କିଭଳି ମହାଭାରତୀୟ ସ୍ରୋତରେ ଏକାକାର ହୋଇଯାଇଛନ୍ତି । ହରିବଂଶ ଆଦି ପୁରାଣମାନଙ୍କରେ ସେ ସବୁର ବର୍ଣ୍ଣନା ଦେଖିବାକୁ ମିଳେ ।

ସେହିଭଳି ଭାବରେ ଆର୍ଯ୍ୟ, ଦ୍ରାବିଡ଼ ସଭ୍ୟତାର ସମନ୍ୱୟ ଘଟି ସମ୍ମିଳିତ ସ୍ରୋତ ସମୃଦ୍ଧ ହୋଇଛି ।

ସଂସ୍କୃତିର ସୁରକ୍ଷା, ସମନ୍ୱୟ, ସଂସ୍କାର ତଥା ପ୍ରସାର ଦିଗରେ ସନ୍ନ୍ୟାସୀମାନଙ୍କର ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ । ମହର୍ଷି ବେଦବ୍ୟାସ ଏବଂ ତାଙ୍କ ପୁତ୍ର ଶୁକଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ମାର୍ଗରେ ପରବର୍ତ୍ତୀ ସମୟରେ ଶଙ୍କରାଚାର୍ଯ୍ୟ ଦୟାନନ୍ଦ ସରସ୍ୱତୀ, ରାମକୃଷ୍ଣ ପରମହଂସ, ବିବେକାନନ୍ଦ, ଶିବାନନ୍ଦ ପ୍ରଭୃତି ମନୀଷୀଗଣ ପରିଚାଳିତ ହୋଇ ଭାରତୀୟ ସଂସ୍କୃତିକୁ ସୁଦୃଢ଼ କରିପାରିଲେ ।

ସନ୍ନ୍ୟାସୀ ପରିବ୍ରାଜକମାନଙ୍କର ଯାତ୍ରୀ ଭଳି ତୀର୍ଥ ସ୍ନାନ ପରମ୍ପରା ମଧ୍ୟ ଦେଶର ଏକତା ଦିଗରେ ଏକ ବିଶେଷ ଭୂମିକା ଗ୍ରହଣ କରିଥାଏ । ଦେଶର ବିଭିନ୍ନ ପ୍ରାନ୍ତରୁ ଲୋକ ଆସି ନଦୀମାନଙ୍କରେ ପବିତ୍ର ସ୍ନାନ କରି ଭାବ ମିଳନ ସମ୍ଭବ କରାଉଥାନ୍ତି ।

"ଗଙ୍ଗେଚ ଯମୁନେଚୈବ ଗୋଦାବରୀ, ସରସ୍ୱତୀ । ନର୍ମଦେ, ସିନ୍ଧୁ, କାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ । କୁରୁକ୍ଷେତ୍ର, ଗୟା, ଗଙ୍ଗା, ପ୍ରଭାସ ପୁଷ୍କରାଣିଚ............" ମାନ କଲାବେଳେ ସମୁଦାୟ ଭାରତ ବର୍ଷର ଚିତ୍ର ପ୍ରକଟିତ ହୋଇଯାଏ । ଭାରତ ବର୍ଷ ଖାଲି ଗୋଟାଏ ଭୌଗୋଳିକ ସୀମା ସରହଦର ସଂଜ୍ଞା ନୁହେଁ । ଏହା ଦେଶମାତୃକାର ଆତ୍ମାକୁ ରୂପାୟିତ କରିଥାଏ ।

ପୁଣି ଦେଶମାତୃକାର ପୂଜନୀୟତା ପ୍ରମାଣିତ କରିବା ପାଇଁ ଶାସ୍ତ୍ର ଗାନ କରିଛି :-

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସି । ଭାଗବତ ଏବଂ ମନୁ ସ୍ମୃତି ଭାରତବର୍ଷକୁ ଦେବତାମାନଙ୍କ ଦ୍ୱାରା ପରିକଳ୍ପିତ ଦେଶ ରୂପରେ ବର୍ଣ୍ଣନା କରିଛନ୍ତି ।

ଆମ ସଂସ୍କୃତିକୁ ସାମର୍ଥ୍ୟ ଯୋଗାଇବା ଦିଗରେ ସଂସ୍କୃତ ଭାଷାର ଅବଦାନ ବିଶେଷ ଉଲ୍ଲେଖଯୋଗ୍ୟ । ପୁରୁଷାନୁକ୍ରମରେ ସବୁ କଥିତ ଭାଷାର ରୂପ ବଦଳି ଚାଲିଛି । ଆଞ୍ଚଳିକତା ଦୃଷ୍ଟିର ମଧ୍ୟ ପୃଥକତ୍ୱ ଆସିଛି । କିନ୍ତୁ ସଂସ୍କୃତ ଭାଷା ଅପରିବର୍ତ୍ତିତ ରହି ସାରା ଭାରତବର୍ଷରେ ଏ ଜାତିର ଧର୍ମ, ଦର୍ଶନ, ବିଜ୍ଞାନ, ସମାଜତତ୍ତ୍ୱ ଓ ଧର୍ମଶାସ୍ତ୍ରର ଭାଷା ହୋଇ ଚଳି ଆସିଛି । ଅନେକ ଦିନ ଧରି ଶାସକମାନଙ୍କର ଦରବାରର ଭାଷା ମଧ୍ୟ ଥିଲା ସଂସ୍କୃତ ।

ଅତୀତରେ ବିଭିନ୍ନ ସମୟରେ ବିଭିନ୍ନ ରାଜ୍ୟ ପରସ୍ପର ଯୁଦ୍ଧ ବିଗ୍ରହରେ ଲିପ୍ତ ରହିଥିଲେ ବି ସାରା ଦେଶର ସଂସ୍କୃତି ଏକ ଓ ଅଭିନ୍ନ ରହିଆସିଛି । ରାମାୟଣ, ମହାଭାରତ, ଭାଗବତ ଆଦି ଗ୍ରନ୍ଥ ସାରା ଦେଶରେ ଯୁଗ ଯୁଗ ଧରି ସମାନ ଆଦର ପାଇଆସିଛି ।

ପରେ ଆଧୁନିକ ସାଂସ୍କୃତିକ ବିପ୍ଳବ ଘଟି ଇଂରାଜୀ ଭାଷା ମାଧ୍ୟମରେ ଜାତୀୟ ସଂହତିକୁ ଅଧିକ ବଳ ମିଳିଛି । ବିଶ୍ୱବିଦ୍ୟାଳୟ ସବୁ ପ୍ରତିଷ୍ଠିତ ହେବା ଦ୍ୱାରା ସଂସ୍କୃତ ଭାଷା ସାହିତ୍ୟ ସାଧାରଣ ଲୋକଙ୍କ ପାଖରେ ପହଞ୍ଚିବାର ଅଧିକ ସୁଯୋଗ ସୃଷ୍ଟି ହେଲା । ପ୍ରାଚ୍ୟ, ପାଶ୍ଚାତ୍ୟ ଚିନ୍ତାଧାରାର ଭାବ ଆଦାନ ପ୍ରଦାନ ସମ୍ଭବ ହେଲା । ପାଶ୍ଚାତ୍ୟ ଏବଂ ପ୍ରାଚ୍ୟ ବିଦ୍ୱାନମାନେ ସମ୍ମିଳିତ ଭାବରେ ଭାରତର ଅତୀତ ସାଂସ୍କୃତିକ ଇତିହାସ ଅନୁଧ୍ୟାନ କରିପାରିଲେ । ସମଗ୍ର ବିଶ୍ୱର ନବ ଜାଗରଣର ବାର୍ତ୍ତା ଭାରତୀୟ ବୁଦ୍ଧିବାଦୀମାନଙ୍କୁ ମଧ୍ୟ ପ୍ରଭାବିତ କଲା ଜାତୀୟ ସ୍ୱାଧୀନତା ଆନ୍ଦୋଳନ ସାରା ଦେଶକୁ ଗୋଟିଏ ଉଦ୍ଦେଶ୍ୟ ଦେଇ ଉଦ୍‌ବୁଦ୍ଧ କଲା ।

ଏହି ବୈଦିକ, ସାଂସ୍କୃତିକ ପୃଷ୍ଠଭୂମି ଉପରେ ଭାରତୀୟ ଜାତୀୟତାବାଦ ପ୍ରତିଷ୍ଠିତ । ତାହା ଖାଲି ଗୋଟାଏ ରାଜନୈତିକ ସଙ୍ଘବଦ୍ଧତା ନୁହେଁ ଗୋଟାଏ ଆଧ୍ୟାତ୍ମିକ ଏକୀଭବନ । ଭାରତବର୍ଷ ଅରବିନ୍ଦଙ୍କର ;ସାଧନାର କ୍ଷେତ୍ର । ବିବେକାନନ୍ଦ, ରାମକୃଷ୍ଣ, ଗାନ୍ଧୀଙ୍କର ପୁଣ୍ୟଭୂମି । ପ୍ରତ୍ୟେକ ଭାରତୀୟଙ୍କର ଅତି ଆପଣାର ଜନ୍ମଭୂମି ଓ କର୍ମଭୂମି । ସେହି ଦେଶର ହିତ ସାଧନ ପାଇଁ ଅତୀତରେ କେତେ କିଏ ଯେ ଆତ୍ମବଳି ଦେଇଯାଇଛନ୍ତି ତା'ର ହିସାବ ନାହିଁ । ସେ ସମସ୍ତେ ଆମର ନମସ୍ୟ ଜାତୀୟ ବ୍ୟକ୍ତିତ୍ୱ । ଏ ଜାତି ମହାଭାରତୀୟ ଜାତି । ଏ ଦେଶ ଭାରତବର୍ଷ ।

---

ଗ୍ରା:/ପୋ: ବୀର ହରେକୃଷ୍ଣପୁର,
ଭାୟା-ପୁରୀ-୨,
ଜିଲ୍ଲା-ପୁରୀ ।

# ଧାନ ରୁଆ ଯନ୍ତ୍ର

**ସୁବାସ ସାହୁ**

ଦିନ ଥିଲା, ମାଟି ହାଣି ମଞ୍ଜି ପୋତୁଥିଲା ମଣିଷ । ସାମାନ୍ୟ କେତୋଟି ଯନ୍ତ୍ର ଧରି ଫସଲ ଚାଷ କରୁଥିଲା । ଛୋଟିଆ କାମଟିଏ କରିବାକୁ ଲାଗି ଯାଉଥିଲା ମାସ ପରେ ମାସ । ହାଡ ଭଙ୍ଗା ପରିଶ୍ରମ କରିବାକୁ ପଡୁଥିଲା ମଣିଷକୁ । ପରିଶ୍ରମ ତୁଳନାରେ ଆଶାନୁପାତ ଅମଳ ବି ମିଳୁ ନ ଥିଲା ।

ଗଡିଗଲା ସମୟ।ଖାଦ୍ୟ ପାଇଁ ମଣିଷର ବ୍ୟାକୁଳତା ବଢିଗଲା କେତେ ଗୁଣ । ନିଜ କାମକୁ ସହଜ ଓ ସୁବିଧାଜନକ କରିବାକୁ ସେ ଚେଷ୍ଟା କଲା । ଏଇଥି ପାଇଁ ଆବିଷ୍କାର ହେଲା ଯନ୍ତ୍ରପାତି । ଲଙ୍ଗଳ, ମଇ, ବିଦା, ଧାଡିବୁଣା ଯନ୍ତ୍ର, ଦାଆ, କୋଦାଳ, ଔଷଧ ପକାଇବା ସ୍ପ୍ରେୟର, ପାୱାର୍ ଟିଲର୍, ଟ୍ରାକ୍ଟର୍ ଏମିତି ଆହୁରି ଅନେକ ।

ସନ୍ତୁଷ୍ଟ ହେଲାନି ମଣିଷର ମନ । ସେ ଭାବିଲା ଆହୁରି ସହଜ ଭାବେ କରାଯାଇ ପାରିବ ସବୁ । ଆହୁରି କମ୍ ସମୟ ବ୍ୟବହାର କରି ଅଧିକ ଫସଲ ଅମଳ କରାଯାଇ ପାରିବ । ସେଥିପାଇଁ ଗତି ଗ୍ରଳିଲା ଗବେଷଣାର ଚକ । ପ୍ରତିଦିନ ଆବିଷ୍କାର ହେଲା ନୂଆ ନୂଆ ତଥ୍ୟ, ପ୍ରତି ମାସ ପ୍ରସ୍ତୁତ କରାଗଲା ନୂତନ ଯନ୍ତ୍ର, ପ୍ରତି ବର୍ଷ ଚାଷ କରିବା ପ୍ରଣାଳୀ ବଦଳିଗଲା ଭିନ୍ନ ଏକ ଢଙ୍ଗକୁ ।

ରୋଇଲା ବେଳେ ଜଣାପଡିଲା ବେଶ୍ କଷ୍ଟକର କାମ ଏହା । ନିୟମିତ ଭାବେ ଧାନ ରୋଇଲେ ବାଙ୍କି ଯାଉଛି ମଣିଷର ଅଣ୍ଟା । କାଦୁଅ ପାଣିରେ ଚବ ଚବ ହୋଇ ତା'ର ସ୍ୱାସ୍ଥ୍ୟ ହାନୀ ଘଟୁଛି । ଠିକ୍ ସଂଖ୍ୟାରେ, ଠିକ୍ ଦୂରତାରେ, ଧାଡିକରି ଗଛ ଲଗାଇବା ସମ୍ଭବ ହୋଇ ପାରୁନି ମଣିଷ ଦ୍ୱାରା ।

ଅଭିଯୋଗ କଲେ କେତେଜଣ, ରୋଇବା କାମ ମୁଖ୍ୟତଃ କରାଯାଇଥାଏ ସ୍ତ୍ରୀ ଲୋକମାନଙ୍କ ଦ୍ୱାରା । ଯଥେଷ୍ଟ ଦୈହିକ କ୍ଳାନ୍ତି ଆସିଥାଏ ସେମାନଙ୍କର । ବିଲରେ କାମ କରି କରି ଅନେକ ସମୟରେ ରୋଗାକ୍ରାନ୍ତ ହୁଅନ୍ତି ସେମାନେ ।

ଚାଷୀମାନଙ୍କର ଅଭିଯୋଗ, ଧାନ ରୋଇବା ପାଇଁ ଅନେକ ଟଙ୍କା ଖର୍ଚ୍ଚ କରୁଛନ୍ତି ସେମାନେ । ଅନେକ ସମୟ ନଷ୍ଟ ହେଉଛି ଏଇ କାମ ପାଇଁ । ବେଳେ ବେଳେ ଠିକ୍ ସମୟରେ ମୂଲିଆ ନ ମିଳିବା ଯୋଗୁଁ ପଛେଇ ଯାଉଛି ଚାଷକାମ । ଧାନ ରୁଆରେ ବିଳମ୍ବ ଘଟିବାରୁ ଅମଳ ବାଧାପ୍ରାପ୍ତ ହେଉଛି କେତେକାଂଶରେ ।

ଏ ସମସ୍ତ ସମସ୍ୟାର ସମାଧାନ ପାଇଁ ପ୍ରସ୍ତୁତ କରାଗଲା ଧାନ ରୁଆ ଯନ୍ତ୍ର । ତଳିକୁ ଉପାଡି ଥୋଇ ଦିଆଯିବ ଏଥିରେ । ଜମିକୁ ଭଲ ଭାବେ କାଦୁଅ କରି ଦିଆଯିବ । ମାଟିକୁ ସମାନ କରି ପ୍ରସ୍ତୁତ କରାଯିବ ତଳି ରୋଇବା ପାଇଁ । ତା ପରେ ଚଳେଇ ଦିଆଯିବ ଧାନରୁଆ ଯନ୍ତ୍ର । ବୁଦାକୁ ବୁଦା ଠିକ୍ ଦୂରତା ରଖି ରୋଇ ହୋଇ ଯିବ ଧାନ । ଆମ ଖୁସିବା ଅନୁସାରେ ଧାଡି ମଧ୍ୟରେ ଦୂରତ୍ୱ ନିର୍ଣ୍ଣୟ କରାଯିବ । ତ୍ରୁଟି ନ ଥିବ, ଜମିରେ ଗଛସଂଖ୍ୟା ଏ ପାଖ ସେ ପାଖ ହେବାର ନଥିବ । ନିଖୁଣ ଭାବେ ରୋଇ ହୋଇଯିବ ଧାନ ଗଛ । ଖୁବ୍ ସହଜରେ, ଅନେକ ଶସ୍ତାରେ, ଅଳ୍ପ ସମୟ ଭିତରେ ଶେଷ କରି ଦିଆଯିବ ଧାନରୁଆ କାର୍ଯ୍ୟ ।

ତଥାପି ବହୁଳ ଭାବେ ବ୍ୟବହୃତ ହୋଇ ନାହିଁ ଏହି ଯନ୍ତ୍ର । ଲାଙ୍ଗଳଟିଏ ପରି ପ୍ରତି ଚାଷୀ ପରିବାରରେ ପହଞ୍ଚି ପାରି ନାହିଁ । ସମସ୍ତେ ଆଦରି ନେଇ ପାରି ନାହାନ୍ତି ଏହି ଯନ୍ତ୍ରଟିକୁ । ମାନିଲାସ୍ଥିତ ଆନ୍ତର୍ଜାତୀୟ ଧାନଗବେଷଣା କେନ୍ଦ୍ରର ବୈଜ୍ଞାନିକ ବଟିଷ୍ଟା ଏହାର କାରଣ ସମ୍ପର୍କରେ କହନ୍ତି, ଏହି ଯନ୍ତ୍ରଟି ଖୁବ୍ ଭାରି ଓ ଜଟିଳ ହୋଇ ଥିବାରୁ ଚାଷୀମାନଙ୍କ ଦ୍ୱାରା ଆଦୃତ ହୋଇନାହିଁ । ଏହା ଛଡା ନିର୍ମାଣ ସମ୍ବନ୍ଧୀୟ କେତେକ ତ୍ରୁଟି ଯୋଗୁଁ ଏହି ଯନ୍ତ୍ର ପ୍ରଭାବଶାଳୀ ହୁଏନାହିଁ । କେତେବେଳେ ଆବଶ୍ୟକତାଠାରୁ ଅଧିକ ସଂଖ୍ୟାରେ ତଳି ପୋତି ଦେଇଥାଏ ତ କେତେବେଳେ ଗୋଟିଏ ଗୋଟିଏ ସ୍ଥାନରେ ଆଦୌ ତଳି ପୋତି ନ ଥାଏ ।

ଏ ସମସ୍ୟାର ସମାଧାନ ପାଇଁ ଲାଗି ପଡିଲେ ବୈଜ୍ଞାନିକମାନେ । ଗୋଟିଏ ନିଖୁଣ, ସରଳ ଧାନରୁଆ ଯନ୍ତ୍ର ଆବିଷ୍କାର କରିବା ନିମିତ୍ତ ଉଦ୍ୟମ ହେଲା ପୁଣି ଥରେ । ଏ ଦିଗରେ କେତେକ ସଫଳତା ହାସଲ କଲେଣି ଆନ୍ତର୍ଜାତୀୟ ଧାନ ଗବେଷଣା କେନ୍ଦ୍ର ବୈଜ୍ଞାନିକମାନେ । ସରଳ, ହାଲୁକା ଧାନରୁଆ ଯନ୍ତ୍ରଟିଏ ପ୍ରସ୍ତୁତ କରିବାରେ ସକ୍ଷମ ହେଲେଣି ସେମାନେ ।

ଇସ୍ପାତ୍, ଆଲୁମିନିଅମ୍ ଓ କାଠରେ ତିଆରି ଏହି ଯନ୍ତ୍ରଟି । ଓଜନ ମାତ୍ର ତେର କିଲୋଗ୍ରାମ୍ । ପୂର୍ବରୁ ତିଆରି କରାଯାଇଥିବା ଯନ୍ତ୍ରର ଓଜନଠାରୁ ଯଥେଷ୍ଟ କମ୍ । ସାଇକେଲର ଗୋଟିଏ ଚକ ଖଞ୍ଜା ଯାଇଥାଏ ଏଥିସହ । ଏହି ଯନ୍ତ୍ରକୁ ଖୋଲିବା ଓ ଯୋଡିକରିବା ପାଇଁ ଖୁବ୍ କମ୍ ସମୟ ଲାଗିଥାଏ । କାଦୁଅରେ ପଶି ନ ଯିବା ପାଇଁ ବ୍ୟବସ୍ଥା କରାଯାଇଥାଏ ଏଥିରେ ।

ଏହି ଯନ୍ତ୍ର ସାହାଯ୍ୟରେ ଏକ ହେକ୍ଟର ଜମି ରୋଇବା ପାଇଁ ୪–୫ ଜଣ ଲୋକ ଦରକାର । ଅନ୍ୟ ହିସାବରେ କହିଲେ ଦୁଇ ଜଣ ଲୋକ ଦିନକରେ ଏକ ଏକର ବିଲ ରୋଇ ପାରିବେ ।

ଏହି ଯନ୍ତ୍ରଟି ଲୋକପ୍ରିୟ ହେଲେ ଅନେକ ସମସ୍ୟା କମିଯିବ ଚାଷୀଙ୍କର । ଧାନ ରୋଇଲା ବେଳେ ମୂଲିଆ ନ ମିଳିଲେ ହଇରାଣ ହେବେନି କେହି । ଅଳ୍ପ ଖର୍ଚ୍ଚରେ ଶେଷ ହୋଇ ଯିବ ରୁଆ କାମ । ସତରେ, ଗୋଟିଏ କଷ୍ଟଦାୟକ କାମରୁ ରକ୍ଷା ମିଳିଯିବ ଚାଷୀଙ୍କୁ ।

ଦୂରଶିକ୍ଷା କାର୍ଯ୍ୟାଳୟ,
ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର-୩ ।



ସୂଚନା ଭବନଠାରେ ମହତାବ ଜୟନ୍ତୀ ଉପଲକ୍ଷେ ଆୟୋଜିତ ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ, ଶ୍ରୀ ଶରତ କୁମାର କର (୨୧/୧୧) ।

# ବ୍ୟାଧି ନିରାକରଣ ସମ୍ପର୍କରେ ପ୍ରାଚୀନ ମତ

ଶ୍ରୀ ଲକ୍ଷ୍ମୀନାରାୟଣ ରାଉତରାୟ

ଜୀବ ଜଗତ ମୋହାଛନ୍ନ ହେବା ଦ୍ୱାରା ବ୍ୟାଧି ସହ ଓତଃପ୍ରୋତ ଭାବେ ଜଡ଼ିତ ହୁଅନ୍ତି । ବ୍ୟାଧି ବିରୁଦ୍ଧରେ ନିରବଚ୍ଛିନ୍ନ ଭାବେ ମନୁଷ୍ୟ ସଂଗ୍ରାମ ଚଳାଇ ଆସିଛି । କିନ୍ତୁ ଅଦ୍ୟାବଧି ସମ୍ପୂର୍ଣ୍ଣ ବିଜୟ ଲାଭ କରିପାରି ନାହିଁ । ସମ୍ପ୍ରତି ଚିକିତ୍ସା ବିଜ୍ଞାନ ବିଶେଷ ଅଗ୍ରଗତି କରିଛି, କିନ୍ତୁ ଦୁଃଖ ଓ ପରିତାପର ବିଷୟ ଏହି ଯେ ଅନେକ ଭୟଙ୍କର ରୋଗ ନିୟନ୍ତ୍ରିତ ହୋଇନାହିଁ । ଅଧିକାଂଶ ରୋଗକୁ ମୂଳୋତ୍ପାଟନ ନକରିପାରି ଔଷଧ ସାହାଯ୍ୟରେ ଦବାଇ ରଖାଯାଉଛି । ଡାଇବେଟିସ୍ ଓ ଏକ୍‌ଜିମା ରୋଗ ଏହାର ଜ୍ୱଳନ୍ତ ଉଦାହରଣ । ତେଣୁ ବ୍ୟାଧି ସୃଷ୍ଟି ତଥା ନିରାକରଣ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ତଥା ଗବେଷଣାର ଆବଶ୍ୟକତା ରହିଛି । ପୁରାତନ କାଳରେ ବ୍ୟାଧି ସୃଷ୍ଟି ତଥା ନିରାକରଣ ସମ୍ପର୍କରେ ବହୁ ଗବେଷଣା କରି ଅନେକ ପାରଦର୍ଶିତା ଲାଭ କରିଥିଲେ । ଗବେଷଣା ସମ୍ବନ୍ଧୀୟ ବିସ୍ତୃତ ଆଲୋଚନା ପାଇଁ ଏକ ସମାଲୋଚନା ପରିଷଦ ଗଠନ କରାଯାଇଥିଲା । ସେ ସମୟରେ କାଶୀର ବାମକ ବୋଲି ଜଣେ ରାଜା ଥିଲେ । ରାଜା ବାମକ ଉକ୍ତ ପରିଷଦର ପ୍ରଥମ ବୈଠକରେ ବ୍ୟାଧି ସୃଷ୍ଟି ତଥା ନିରାକରଣ ସମ୍ବନ୍ଧୀୟ ଆଲୋଚନା ଉତ୍ଥାପନ ପ୍ରସଙ୍ଗରେ କହିଲେ ପୁରୁଷ ଓ ବ୍ୟାଧି ସୃଷ୍ଟିର ମୌଳିକ କାରଣ ସମୂହରେ ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ରହିଛି । ଆଲୋଚନାରେ ମୁଖ୍ୟ ଅଂଶ ଗ୍ରହଣ କରିଥିବା ନଅ ଜଣ ଋଷି ନିଜ ନିଜର ସିଦ୍ଧାନ୍ତ ନିମ୍ନ ମର୍ମରେ ପ୍ରକାଶ କରିଥିଲେ ।

## ମୌଦଗଲ୍ୟ ପରୀକ୍ଷିଙ୍କ ସିଦ୍ଧାନ୍ତ :

ପୁରୁଷ ଆତ୍ମଜ ହୋଇଥିବାରୁ ରୋଗ ବି ଆତ୍ମଜ । ପ୍ରାଣ ଶକ୍ତି ଭୌତିକ ଶରୀରର ସମସ୍ତ ଯନ୍ତ୍ର ସମୂହକୁ ଶକ୍ତି ଯୋଗାଇ ସ୍ୱ ସ୍ୱ କାର୍ଯ୍ୟକ୍ଷମ କରାଇଥାଏ । ଚୁମ୍ବକକୁ ଚୁମ୍ବକୀୟ ଶକ୍ତି ଯେପରି ଘେରି ରହିଥାଏ ସେହିପରି ପ୍ରାଣଶକ୍ତି ଆତ୍ମାରୁ ଉଦ୍ଭିତ ହୋଇ ଶରୀରର ସମସ୍ତ ଅଂଶକୁ ଆବୃତ କରି ରହିଥାଏ । ସାତ୍ତ୍ୱିକ ଗୁଣ ବୃଦ୍ଧିରେ ପ୍ରାଣଶକ୍ତିର ବୃଦ୍ଧି । ତେଣୁ ତାମସିକ ଗୁଣ ବୃଦ୍ଧିରେ ଏହା ଦୁର୍ବଳ ହୋଇପଡ଼େ । ଦୁର୍ବଳ ପ୍ରାଣଶକ୍ତି ରୋଗ ସୃଷ୍ଟିର ସହାୟକ ପାରୀକ୍ଷି ଋଷି ଯୁକ୍ତି ବାଢ଼ିଥିଲେ କି ଏହି ଚରାଚର ଜଗତରେ ଆତ୍ମା ସ୍ୱତନ୍ତ୍ର । ସ୍ୱତନ୍ତ୍ର ବ୍ୟକ୍ତି ଯେଉଁ ପ୍ରକାର କର୍ମ ସମ୍ପାଦନ କରେ ସେହି ପ୍ରକାର ଫଳ ମଧ୍ୟ ପାଏ । ପୁରୁଷ ପରତନ୍ତ୍ର । ଅର୍ଥାତ୍ ଆତ୍ମାର ଅଧୀନ । ମନ ସହ ଯୁକ୍ତ ଆତ୍ମା ଭଲ ମନ୍ଦ ଯାହା କର୍ମ କରେ ସେହି ଅନୁସାରେ ପୁରୁଷ ଶରୀର ଧାରଣ କରେ । ଶାସ୍ତ୍ରରେ ଶରୀରକୁ ପୁରୁଷ ବୋଲି ଧରାଯାଇଛି । ଏହି ଶରୀର ଦ୍ୱାରା ଆତ୍ମା ସୁଖ ଦୁଃଖ ଅନୁଭବ କରେ । ଉତ୍ତମ କର୍ମ କଲେ ଆତ୍ମା ସୁଖୀ ହୁଏ ଓ ମନ୍ଦ କର୍ମ କଲେ ଆତ୍ମା ଦୁଃଖୀ ହୁଏ । ସୁଖର ଅନ୍ୟ ନାମ ଆରୋଗ୍ୟ ଓ ଦୁଃଖର ଅନ୍ୟ ନାମ ରୋଗ କହିଲେ ଅସମିଚୀନ ହେବ ନାହିଁ । ସଂକ୍ଷେପରେ ପାରୀକ୍ଷିଙ୍କ ସିଦ୍ଧାନ୍ତ ଏହିପରି ଆତ୍ମ ଯେଉଁ ପ୍ରକାର କର୍ମ କରି ଶରୀର ଧାରଣ ପୂର୍ବକ ପୁରୁଷ ରୂପେ ପ୍ରକାଶିତ ହୁଏ ସେହି ପ୍ରକାର କର୍ମ ଯୋଗୁଁ ହିଁ ରୋଗୀ ବା ନିରୋଗୀ ହୋଇଥାଏ । ବେଦ ମଧ୍ୟ ପାରୀକ୍ଷିଙ୍କ ଉପରୋକ୍ତ ସିଦ୍ଧାନ୍ତ ସହ ପ୍ରାୟ ଏକ ମତ ।

## ଶରଲୋମାଙ୍କ ସିଦ୍ଧାନ୍ତ :

ସଭାରେ ଉପସ୍ଥିତ ଋଷି ଶରଲୋମା ରୋଗ ସୃଷ୍ଟିର କାରଣ ବିଷୟରେ କହିଥିଲେ — ଆତ୍ମା କେବେ ଦୁଃଖ ସୁଖ ବା ରୋଗ ସୃଷ୍ଟି ପାଇଁ ଦାୟୀ ହୋଇ ନପାରେ । ଆତ୍ମା ସହ ଯୁକ୍ତ ମନ ଯେତେବେଳେ ରଜ ଓ ତମ ଗୁଣରେ ପ୍ରବୁଦ୍ଧ ହୋଇ କର୍ମ କରେ ସେହି ପ୍ରକାର କର୍ମର ଫଳ ଶରୀର ଉପରେ ପ୍ରଭାବ ବିସ୍ତାର କରି ରୋଗ ସୃଷ୍ଟି କରେ । ଶ୍ରଦ୍ଧା ଓ ଭକ୍ତି ଭାବ ଦ୍ୱାରା ଶରୀର ଉପରେ ପ୍ରାଣଶକ୍ତିର କାର୍ଯ୍ୟ ଦକ୍ଷତା ବୃଦ୍ଧିପ୍ରାପ୍ତ ହୋଇଥାଏ । ଏପରି ସ୍ଥଳେ ରୋଗ ସୃଷ୍ଟି ହୋଇପାରେ ନାହିଁ । ତେଣୁ ମନୁଷ୍ୟର ବିକାର ମନ ହିଁ ରୋଗ ସୃଷ୍ଟି ପାଇଁ ଦାୟୀ ।

## ବାର୍ଯ୍ୟୋଂବିଦ ଋଷିଙ୍କ ସିଦ୍ଧାନ୍ତ :

ବାର୍ଯ୍ୟୋଂବିଦ ଋଷି ଶରଲୋମାଙ୍କ ସିଦ୍ଧାନ୍ତ ଉପରେ ମନ୍ତବ୍ୟ ଦେଇ କହିଥିଲେ ଶରୀର ବିନା ମନର ସ୍ଥିତି ସମ୍ଭବ ନୁହେଁ । ତେଣୁ ରୋଗ ସୃଷ୍ଟି ପାଇଁ କେବଳ ମନ ଦାୟୀ ନୁହେଁ । ମନୁଷ୍ୟ ଦୈନନ୍ଦିନ ଯେଉଁ ପ୍ରକାର ଖାଦ୍ୟ ଗ୍ରହଣ କରେ ଓ ଖାଦ୍ୟରେ ଯେଉଁ ପ୍ରକାର ରସ ନିହିତ ଥାଏ ସେହି ପ୍ରକାର ରସ ଶରୀର ପାଇଁ ଅନେକ ସମୟରେ ଉପଯୁକ୍ତ ହୋଇ ନଥାଏ । ତେଣୁ ଅନୁପଯୁକ୍ତ ରସ ଶରୀରରେ ରୋଗ ସୃଷ୍ଟି କରିଥାଏ ।

ମାତା ପିତାଙ୍କ ଆହାର ରସରୁ ସନ୍ତାନର ଦେହ ମନ ରୂପ ନିଏ । ମାତା ଗର୍ଭ ଧାରଣ କରିବା ପରଠାରୁ ସନ୍ତାନ ଭୂମିଷ୍ଠ ହେବା ପର୍ଯ୍ୟନ୍ତ ଯେଉଁ ଯେଉଁ ପ୍ରକାର ଖାଦ୍ୟ ଗ୍ରହଣ କରେ ସେହି ସେହି ପ୍ରକାର ରସ ଓ ଗୁଣ ନେଇ ଶିଶୁ ବୃଦ୍ଧି ପ୍ରାପ୍ତ ହୋଇଥାଏ ।

ତେଣୁ ରୋଗ ସୃଷ୍ଟି ପାଇଁ ଆହାର ତଥା ରସ ହିଁ ଦାୟୀ । ଏହି କାରଣରୁ ପୁରୁଷ ବା ଭୌତିକ ଶରୀର ରସରୁ ଉତ୍ପନ୍ନ ବୋଲି ଆୟୁର୍ବେଦ ଶାସ୍ତ୍ର ଯୁକ୍ତି ବାଢ଼ିଥାଏ ।

## ହିରଣ୍ୟାକ୍ଷ ଋଷିଙ୍କ ସିଦ୍ଧାନ୍ତ :

ସଭାରେ ଉପସ୍ଥିତ ହିରଣ୍ୟାକ୍ଷ ଋଷି ବାର୍ଯ୍ୟୋବିଦ ଋଷିଙ୍କ ଉକ୍ତି ସମ୍ପର୍କରେ ସମ୍ପୂର୍ଣ୍ଣ ଏକମତ ହୋଇନଥିଲେ । ସେ କହିଥିଲେ, ଆତ୍ମା କେବେ ରସରୁ ଉତ୍ପତ୍ତି ହୋଇନପାରେ । ସେହିପରି ମନ ଯେହେତୁ ଅତିନ୍ଦ୍ରିୟ ଏହା ରସରୁ ଜାତ ହୁଏନାହିଁ । ଏହି କାରଣରୁ ରୋଗ ସୃଷ୍ଟି କେବଳ ରସରୁ ଉତ୍ପତ୍ତି ହୋଇନପାରେ । କାରଣ ଷଡିନ୍ଦ୍ରିୟ ଶବ୍ଦାଦି ମାଧ୍ୟମ ଦ୍ୱାରା ରୋଗର ମଧ୍ୟ ଉତ୍ପନ୍ନ ହୋଇଥାଏ । ପୁରୁଷ ସୃଷ୍ଟି ଷଡ଼ଧାତୁରୁ ହୋଇଥାଏ । ସେହିପରି ରୋଗ ସୃଷ୍ଟି ମଧ୍ୟ ଷଡ଼ଧାତୁରୁ ହୋଇଥାଏ । ପ୍ରାଚୀନ କାଳରେ ଚିକିତ୍ସାବିତ୍‌ମାନେ ରୋଗୀମାନଙ୍କୁ ପରୀକ୍ଷା କରି ରୋଗ ସୃଷ୍ଟି ଷଡ଼ଧାତୁଜ ବୋଲି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ।

## କୌଶିକ ଋଷିଙ୍କ ସିଦ୍ଧାନ୍ତ :

ସଭାରେ ଉପସ୍ଥିତ କୌଣସି ଋଷି ହିରଣ୍ୟାକ୍ଷ ରୋଗ ସୃଷ୍ଟି ସମ୍ବନ୍ଧୀୟ ଉପରେ ଆଲୋଚନା ପ୍ରସଙ୍ଗରେ କହିଲେ — ଷଡ଼ଧାତୁ ପିତାମାତାଙ୍କ ବିନା ସୃଷ୍ଟି ହୋଇ ନପାରେ । ମନୁଷ୍ୟଠାରୁ ମନୁଷ୍ୟ ଓ ପଶୁଠାରୁ ମନୁଷ୍ୟ କେବେ ଜାତ ହୁଏ ନାହିଁ । ତେଣୁ ପୁରୁଷ ଓ ରୋଗ ସୃଷ୍ଟି ପାଇଁ ପିତାମାତା ହିଁ ଦାୟୀ ।

## ଭଦ୍ରକାପ୍ୟ ଋଷିଙ୍କ ସିଦ୍ଧାନ୍ତ :

ସଭାରେ ଉପସ୍ଥିତ ଭଦ୍ରକାପ୍ୟ ଋଷି କୌଶିକଙ୍କ ଯୁକ୍ତି ଶୁଣି ଏକମତ ନହୋଇ କହିଲେ, ରୋଗ ସୃଷ୍ଟି ପାଇଁ କେବଳ ମାତାପିତା ହିଁ ଦାୟୀ ହୋଇ ନପାରନ୍ତି । ପାରବ୍ଧ କର୍ମ ଓ ସଂସ୍କୃତି ଅନୁସାରେ ଜୀବ ଜନ୍ମଗ୍ରହଣ କରିଥାଏ । ତେଣୁ ତା'ର ରୋଗ ମଧ୍ୟ କର୍ମଜ ହେବା ସ୍ୱାଭାବିକ । ଯଦି ଭଦ୍ରକାପ୍ୟ ଋଷିଙ୍କ ସିଦ୍ଧାନ୍ତ ଅନୁସାରେ ରୋଗ ସୃଷ୍ଟି ପାଇଁ ପିତାମାତା ଦାୟୀ ହୁଅନ୍ତେ ତେବେ ଅନ୍ଧ ପିତାମାତାଙ୍କଠାରୁ ସବୁବେଳେ ଅନ୍ଧ ସନ୍ତାନ କାହିଁକି ଜାତ ହେଉନାହାନ୍ତି ?

## ଭରଦ୍ୱାଜ ଋଷିଙ୍କ ସିଦ୍ଧାନ୍ତ :

ଭରଦ୍ୱାଜ ଋଷି ଯୁକ୍ତି ବାଢ଼ି କହିଲେ ସର୍ବତନ୍ତ୍ର ସିଦ୍ଧାନ୍ତ ଅନୁସାରେ, "କୃତସ୍ୟ କର୍ମଣଃ ଫଳଂ ନା କୃତସ୍ୟ" ଅର୍ଥାତ୍ ଯେଉଁ କର୍ମ କରାଯାଏ, ତାହାର ଫଳ ନିଶ୍ଚୟ ଅଛି । କୌଣସି ଘଟଣା ବା କାର୍ଯ୍ୟ ବିନା କର୍ମରେ ସମ୍ପାଦିତ ହୋଇପାରେ ନାହିଁ । ପୁନଶ୍ଚ ବିନା କର୍ତ୍ତାରେ କୌଣସି କର୍ମ ବି ସମ୍ଭବ ନୁହେଁ । ବିନା କର୍ମରେ କୌଣସି ଫଳ ଫଳେ ନାହିଁ । ସ୍ୱଭାବ ହେତୁ ଜୀବାତ୍ମା କର୍ମ ଡତ୍ପନ୍ନ ହୋଇଥାଏ । ତେଣୁ ପୁରୁଷ ଓ ରୋଗ ସୃଷ୍ଟି ପାଇଁ ଦାୟୀ । ଉଦାହରଣ ସ୍ୱରୂପ, ଏହା କୁହାଯାଇପାରେ ବି ପୃଥିବୀରେ ସ୍ୱରତ୍ୱ, ଦ୍ରବତ୍ୱ, ଉଷ୍ଣତ୍ୱ ଓ ଚଳତ୍ୱ ସ୍ୱଭାବରୁ ହିଁ ଉତ୍ପନ୍ନ ହୁଏ ଏବଂ ଏଥିପାଇଁ ଅନ୍ୟ କୌଣସି ନିର୍ଦ୍ଦିଷ୍ଟ କାରଣ ନିର୍ଣ୍ଣୟ ହୋଇପାରି ନାହିଁ ।

## କାକାଂଯନ ଋଷିଙ୍କ ସିଦ୍ଧାନ୍ତ :

ସଭାରେ ଉପସ୍ଥିତ କାକାଂଯନ ଋଷି ମତବ୍ୟକ୍ତ କରି କହିଲେ ସ୍ୱଭାବ ଯୋଗୁଁ ଯଦି ସମସ୍ତ ଘଟୁଥାନ୍ତା, ତେବେ କେହି ଯଜ୍ଞ ପୂଜା, କୃଷି ଓ ବାଣିଜ୍ୟ କିଛି କରିବାକୁ ଚାହାନ୍ତେ ନାହିଁ । ତେଣୁ ପୁରୁଷ ଓ ରୋଗ ସୃଷ୍ଟି ପାଇଁ ପ୍ରଜାପତି ହିଁ ଦାୟୀ । କାରଣ ପୃଥିବୀ ପୃଷ୍ଠରେ ସମସ୍ତ ଘଟଣା ଓ ମନୁଷ୍ୟର ସମସ୍ତ ସୁଖ, ଦୁଃଖ, ହାନିଲାଭ ତାଙ୍କରି ନିର୍ଦ୍ଦେଶରେ ସମ୍ପାଦିତ ହୋଇଥାଏ ।

## ଭିକ୍ଷୁ ଆତ୍ରେୟଙ୍କ ସିଦ୍ଧାନ୍ତ :

କାକାଂଯନଙ୍କ ରୋଗ ସୃଷ୍ଟି ସମ୍ବନ୍ଧୀୟ ସିଦ୍ଧାନ୍ତ ଭିକ୍ଷୁ ଆତ୍ରେୟ କହିଲେ ବ୍ରହ୍ମାଙ୍କ ପୁତ୍ର ପ୍ରଜାପତି ଯଦି ଦୁଃଖ ତଥା ରୋଗ ସୃଷ୍ଟି ପାଇଁ ଦାୟୀ ତେବେ ସମସ୍ତ ପ୍ରାଣୀ ପ୍ରଜାପତିଙ୍କ ସୃଷ୍ଟି । ତେଣୁ ସମସ୍ତ ପ୍ରାଣୀ ପ୍ରଜାପତିଙ୍କ ସନ୍ତାନ ସ୍ୱରୂପ । ପିତା ପୁତ୍ରର ସର୍ବଦା ହିତ କାମନା କରନ୍ତି । ତେଣୁ ପ୍ରଜାପତି କେବେହେଲେ ରୋଗ ସୃଷ୍ଟି ପାଇଁ ଦାୟୀ ହେବେନାହିଁ । ତେଣୁ ପୁରୁଷ ଓ ରୋଗ ସୃଷ୍ଟି ପାଇଁ କାଳ ହିଁ ଦାୟୀ । ସମସ୍ତ ଜୀବଜଗତ ଓ ଅଖିଳ ବିଶ୍ୱ ବ୍ରହ୍ମାଣ୍ଡ କାଳର ବଶୀଭୂତ । ମହାଭାରତରେ କାଳର କରାଳ ଗତି ସମ୍ପର୍କରେ ଗୋଟିଏ ସୁନ୍ଦର ଶ୍ଳୋକ ଅଛି :

କାଳ ପଚତି ଭୂତାନି କାଳଃ ସଂହରତେ ପ୍ରଜାଃ
କାଳ ସପ୍ତେଷୁ ଜାଗର୍ତି କାଳୋହି
ଦୁରତିକ୍ରମଃ ନ କାଳତୋ
ବ୍ୟାହରତେ ଚ ବାଲଃ
ନ କାଳତୋ ଯୌବନମଭ୍ୟୁପୈତି
ନ କାଳହୋ ରୋହତି ବିଜମୁପ୍ତମ୍
କାଳ ମୂଳ ମିଦଂ । ସର୍ବେ ଭାବାଭାବୌ ସୁଖାସୁଖେ ।
କାଳେନା ଭ୍ୟାଗତାଃ ସର୍ବେ କାଳୋହି ବଳବତ୍ତରଃ ।

## ଆତ୍ରେୟ ପୁନର୍ବସୁଙ୍କ ସିଦ୍ଧାନ୍ତ :

ଆତ୍ରେୟ ପୁନର୍ବସୁ କହିଲେ ଉପରୋକ୍ତ ସମସ୍ତ ସିଦ୍ଧାନ୍ତରେ କିଛି ନା କିଛି ସତ୍ୟ ନିହିତ ଅଛି । ସମସ୍ତ ଋଷିଙ୍କର ମତାମତକୁ ସମନ୍ୱିତ କରି ଆତ୍ରେୟ ପୁନର୍ବସୁ କହିଲେ ଯେଉଁ ଯେଉଁ ଭାବରେ ସମ୍ପତ୍ତି ସ୍ୱରୂପ ପୁରୁଷର ଉତ୍ପତ୍ତି ହୁଏ ସେହି ଭାବର ବିପତ୍ତି ସ୍ୱରୂପ ରୋଗ ମଧ୍ୟ ଉତ୍ପନ୍ନ ହୋଇଥାଏ ।

ଶ୍ଳୋକ :

ଯଶମେ ବହି ଭାବନାଂ ସଂପତ୍ ସଂଜନୟେନ୍ନରମ୍
ତେଷାମେବ ବିପଦ୍ୟାଧୀନ ବିବିଧାନ ସମୁଦୀରୟେତେ ।

କହିବା ବାହୁଲ୍ୟ ଯେ କାଳ ହିଁ ସମସ୍ତ ଭାବର ସମ୍ପତ୍ତି ଓ ବିପତ୍ତି ରୂପେ ପ୍ରତିଭାତ ହୋଇ ପୁରୁଷ ସୃଷ୍ଟି ଓ ରୋଗ ସୃଷ୍ଟି ପାଇଁ ସମ୍ପୂର୍ଣ୍ଣ ଦାୟୀ । ପରନ୍ତୁ ବିଶ୍ୱ ନିୟନ୍ତା କାଳଜୟୀ ଆପଦ ବିପଦରେ ଲୋକେ କହନ୍ତି କାଳିଆ ହିଁ ସାହା ଭରସା । ଭକ୍ତ ଭୀମ ଭୋଇ ଗାଇଛନ୍ତି :

ମହିମା ପ୍ରସନ୍ନ ହେଲେ କି କରିବ କାଳ
ସିଂହ ପ୍ରାୟ ଘୁରୁଥିବ ଏ ମହି ମଣ୍ଡଳ ।
ମହିମା ପ୍ରସନ୍ନ ହେଲେ କି କରିବ ଯମ
ପାଦ ତଳେ ଯମ କରିଯିବ କ୍ଷମ ।

---

ନିର୍ବାହୀ ଯନ୍ତ୍ରୀ, ବିଦ୍ୟୁତ୍,
ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ପରିଷଦ,
ଭୁବନେଶ୍ୱର ।

# ବ୍ୟାଘ୍ର ଦେବୀ

ଶ୍ରୀ ମନୋରଞ୍ଜନ ପାଣିଗ୍ରାହୀ

ବ୍ୟାଘ୍ରାରୂଢ଼ାଂ ଶବହୃଦୟଗଣମଗ୍ନିବର୍ଣ୍ଣାଂ ତ୍ରିନେତ୍ରାଂ ।
ଧୃତ୍ୱାବାଣାଂ ଧନୁମଭୟକରାଂ ବେଦହସ୍ତୈଃ ପ୍ରଶସ୍ତାଃ ॥
ଜିହ୍ୱା ଲୋଲାଂ ବଳିରୁଧିରଗଣଂ ରକ୍ତବସ୍ତ୍ରଂ ପିଧାୟ ।
ଏବଂ ଧ୍ୟାୟେ ତ୍ରିଜଗତ ଜନନୀଂ ବ୍ୟାଘ୍ରଦେବୀଂ ନମାମି ॥

ଦକ୍ଷିଣ ଓଡ଼ିଶାର ପ୍ରଖ୍ୟାତ ଶାକ୍ତ ପୀଠମାନଙ୍କ ମଧ୍ୟରେ ପ୍ରାଚୀନ ଘୁମୁସର ରାଜ୍ୟର ଆରାଧ୍ୟ ଦେବୀ ବାଘ୍ ଦେବୀ ଅନ୍ୟତମା । ଘୁମୁସର ରାଜ୍ୟର ରାଜଧାନୀ କୁଲାଡ଼ଗଡ଼, ଏକଦା ଭଞ୍ଜବଂଶୀୟ ରାଜାମାନଙ୍କ ଆବାସ ସ୍ଥଳୀ ଥିଲା । ଘୁମୁସର ରାଜବଂଶର ଦୀର୍ଘ ୭୦୦ ବର୍ଷର ଇତିହାସ ଅନୁଧ୍ୟାନ କଲେ ଜଣାଯାଏ, ଭଞ୍ଜବଂଶୀୟ ରାଜାମାନେ ପୁରୁଷାନୁକ୍ରମିକ ଶୈବ ଓ ବୈଷ୍ଣବୀୟ ଧର୍ମଧାରାର ପୃଷ୍ଠପୋଷକତା ଲାଭ କରି ଏକାଧିକ ବିଷ୍ଣୁ ମନ୍ଦିର, ଯଥା : ନୃସିଂହନାଥ, ଜଗନ୍ନାଥ, ଗୋପୀନାଥ, ରଘୁନାଥ, ରାଧାକୃଷ୍ଣ ଏବଂ ବାଲୁଙ୍କେଶ୍ୱର, କଣ୍ଠେଶ୍ୱର, ସ୍ୱପ୍ନେଶ୍ୱର ଇତ୍ୟାଦି ଶିବ ମନ୍ଦିର ସ୍ଥାପନ କରିଥିଲେ ମଧ୍ୟ ଶାକ୍ତ ମନ୍ଦିରର ପ୍ରତିଷ୍ଠା ଘୁମୁସର ଇତିହାସରେ ଦେଖିବାକୁ ମିଳେ ନାହିଁ । ବାଘ୍ ଦେବୀଙ୍କ ସମ୍ପର୍କରେ କୌଣସି ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ସୂଚନା ନମିଳିଲେ ବି ରଘୁନାଥ ଭଞ୍ଜଙ୍କଠାରୁ ଆରମ୍ଭ କରି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଭଞ୍ଜବଂଶୀୟ କାବ୍ୟ ଗ୍ରନ୍ଥମାନଙ୍କରେ ବାଘ୍ ଦେବୀଙ୍କୁ ଭଞ୍ଜବଂଶୀୟ ଇଷ୍ଟ ଦେବୀ ରୂପେ ଅଭିହିତ କରାଯାଇଛି ।

## ପୀଠର ଅବସ୍ଥିତି

ଗଞ୍ଜାମ ଜିଲ୍ଲା ଭଞ୍ଜନଗର ସହରଠାରୁ ଉତ୍ତରକୁ ସାତ କିଲୋମିଟର ଅତିକ୍ରମ କଲେ କୁଲାଡ଼ଗଡ଼ର ପଶ୍ଚିମ ପ୍ରାନ୍ତରରେ ବାଘ୍ ଦେବୀଙ୍କ ପୀଠ ବିଦ୍ୟମାନ । ଏକ ପାର୍ଶ୍ୱରେ ନିଘଞ୍ଚ ଅରଣ୍ୟାନୀ ପରିବେଷ୍ଟିତ ପର୍ବତର ବିରାଟ ପ୍ରାଚୀର ଏବଂ ଅନ୍ୟ ପାର୍ଶ୍ୱ ଏକାଧିକ ପୁଷ୍କରିଣୀ ପରିଶୋଭିତ । ଉତ୍କଳରେ ପୂଜିତ ଚଣ୍ଡୀ, ମଙ୍ଗଳା, ବିମଳା, ସାରଳା, ଚର୍ଚ୍ଚିକା, ହିଙ୍ଗୁଳା, ଭଗବତୀ ଓ ସମଲାଇଙ୍କ ପରି କୁଲାଡ଼ସ୍ଥ ମା' ବ୍ୟାଘ୍ର ଦେବୀ ମଧ୍ୟ ଦୁର୍ଗାଙ୍କର ଅଂଶ ବିଶେଷ । ମା' ବ୍ୟାଘ୍ର ଦେବୀଙ୍କ ନାମ ଶ୍ରବଣ ମାତ୍ରକେ ଭକ୍ତମାନଙ୍କ ମସ୍ତକ ଆପେ ଆପେ ଅବନତ ହୋଇଯାଏ । ଦେବୀଙ୍କ ବିଶ୍ୱ ସଂହାର ରୂପ ମାନବ ପ୍ରାଣରେ ଯେତିକି ଭୟ ସଞ୍ଚାର କରେ, ଶାନ୍ତ କାନ୍ତ ରୂପ ସେତିକି ଆଶ୍ୱାସନା ଦେଇଥାଏ ।

୮୩୨ ଖ୍ରୀଷ୍ଟାବ୍ଦରେ ରଘୁନାଥ ଭଞ୍ଜଙ୍କ ଦ୍ୱାରା ଘୁମୁସର ରାଜ୍ୟ ପ୍ରତିଷ୍ଠା ହେବା ପୂର୍ବରୁ କୁଲାଡ଼ ଅଞ୍ଚଳକୁ ଖିଞ୍ଜାଲି ମଣ୍ଡଳ ବୋଲି କୁହାଯାଉଥିଲା ଏବଂ ଖିଞ୍ଜାଲି ମଣ୍ଡଳ ବାରଗଡ଼ିଆଙ୍କ ଦ୍ୱାରା ଶାସିତ ହୋଇ ବୌଦ୍ଧ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଭଞ୍ଜବଂଶୀୟ ରାଜାମାନେ ବାରଗଡ଼ିଆଙ୍କୁ ପରାସ୍ତ କରି ଘୁମୁସର ରାଜ୍ୟ ପ୍ରତିଷ୍ଠା କରିଥିଲେ ।

କୁଲାଡ଼ଗଡ଼ ଓ ବାଘ୍‌ଦେବୀଙ୍କ ପୀଠର ପ୍ରତିଷ୍ଠା ଓ ଉତ୍ପତ୍ତି ସମ୍ପର୍କରେ କୌଣସି ଐତିହାସିକ ଓ ପ୍ରାମାଣିକ ଉପାଦାନ ନଥିଲେ ବି ଅସଂଖ୍ୟ ଜନଶ୍ରୁତି ଓ କିମ୍ବଦନ୍ତୀକୁ ଭିତ୍ତି କରି ଏହା ପ୍ରତିଷ୍ଠିତ । ଜନଶ୍ରୁତି ଅନୁଯାୟୀ ଭଞ୍ଜବଂଶୀୟ ରାଜାଙ୍କ ଶାସନ ପୂର୍ବରୁ "କୁଲାଡ଼" ଅଞ୍ଚଳଟି "କୁଲାଡହ" ନାମକ ଜଣେ କନ୍ଧ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ବାଘ୍ ଦେବୀ ଥିଲେ କନ୍ଧ ରାଜା "କୁଲାଡହ"ଙ୍କ ଇଷ୍ଟ ଦେବୀ । "କୁଲାଡହ" ଘୁମୁସର ପ୍ରତିଷ୍ଠାତା ରଘୁନାଥ ଭଞ୍ଜଙ୍କ ବିଂଶତମ ବଂଶଧର ତଥା ସପ୍ତଦଶ ଶତାବ୍ଦୀର ମହାପ୍ରତାପୀ ରାଜା ପ୍ରତାପ ଭଞ୍ଜଙ୍କୁ ଅମାନ୍ୟ କରିବାରୁ ଭଞ୍ଜ ରାଜା "କୁଲାଡହ"କୁ ଯୁଦ୍ଧରେ ବିନାଶ କରି ଅଞ୍ଚଳଟିକୁ ଘୁମୁସରରେ ମିଶାଇ ଦେଇଥିଲେ । "କୁଲାଡହ"ଙ୍କ ଶେଷ ଇଚ୍ଛାନୁଯାୟୀ ଗଡ଼ଟିର ନାମ କୁଲାଡ଼ ରଖି ଏବଂ ରାଜଧାନୀ କୁଲାଡ଼କୁ ସ୍ଥାନାନ୍ତର କରି କନ୍ଧ ରାଜାଙ୍କ ଇଷ୍ଟ ଦେବୀ ବାଘ୍ ଦେବୀଙ୍କୁ ଘୁମୁସର ରାଜବଂଶର ଇଷ୍ଟ ଦେବୀ ରୂପେ ପୂଜାର୍ଚ୍ଚନା କରିଥିଲେ ।

ଅନ୍ୟତଃ ପ୍ରତାପ ଭଞ୍ଜଙ୍କ ରାଜତ୍ୱ ସମୟରେ ଭୀଷଣ ମହାମାରୀ ବ୍ୟାପୀ ଘୁମୁସର ଅଧିବାସୀଙ୍କୁ ସ୍ଥାନାନ୍ତର କରିବା ଯୋଗୁଁ କୁଲା ଓ ଡହ ନାମକ ଦୁଇଜଣ ଆଦିବାସୀ ରାଜା ପ୍ରତାପ ଭଞ୍ଜଙ୍କୁ ତାଚ୍ଛଲ୍ୟ କରିବାରୁ ରାଜା ଉଭୟଙ୍କୁ ଯୁଦ୍ଧରେ ପରାସ୍ତ କରି ରାଜ୍ୟାନ୍ତର କଲେ ବି ସେମାନଙ୍କ ଅନୁରୋଧକ୍ରମେ "କୁଲାଡହ" ଗଡ଼ ସ୍ଥାପନ କରି ବ୍ୟାଘ୍ର ଦେବୀଙ୍କୁ ଇଷ୍ଟ ଦେବୀ ରୂପେ ଗ୍ରହଣ କରିଥିଲେ ।

## ପ୍ରାଚୀନ ଶାକ୍ତ ପୀଠ

ବ୍ୟାଘ୍ର ଦେବୀଙ୍କୁ ବାକ୍‌ଦେବୀ ଭାବରେ ମଧ୍ୟ ଅଭିହିତ କରାଯାଇଛି । କିନ୍ତୁ ମୂର୍ତ୍ତି ତାତ୍ତ୍ୱିକ ବିଶ୍ଳେଷଣ ଓ ଗବେଷଣାରୁ ଜଣାଯାଏ ଯେ ବାଗ୍‌ଦେବୀ ପୀଠ ଏକ ପ୍ରାଚୀନ ଶାକ୍ତ ପୀଠର ପର୍ଯ୍ୟାୟଭୁକ୍ତ । ଏଠାକାର ପ୍ରଚଳିତ ପୂଜା ଓ ଉପାସନା ପଦ୍ଧତି ସମ୍ପୂର୍ଣ୍ଣ ଭାବେ ଚଣ୍ଡୀ ଓ ଦେବୀ ଉପାସନାର ଅନ୍ତର୍ଭୁକ୍ତ । ବ୍ୟାଘ୍ର ବାହିନୀ 'ମା' ଦୁର୍ଗାଙ୍କର ଏହି ପ୍ରତିଷ୍ଠା ପଛରେ ରଣପ୍ରିୟ ଭଞ୍ଜ ରାଜନ୍ୟ ମଣ୍ଡଳୀର ତାନ୍ତ୍ରିକ ଉପାସନା ଓ ପଶୁବଳୀ ପ୍ରଥାର ପ୍ରବର୍ତ୍ତନ ଏହି ପୀଠକୁ ଶାକ୍ତ ପୀଠ ଭାବେ ପ୍ରମାଣିତ କରିଛି ।

"କୁଲାଡ଼ଗଡ଼"ପଶ୍ଚିମସ୍ଥ ପ୍ରକାଣ୍ଡ ପର୍ବତ ଶ୍ରେଣୀ ବାଗା ଦେବୀ ପର୍ବତ ନାମରେ କଥିତ । ବାଗ୍ ଦେବୀଙ୍କ ଏହା ମୂଳ ପୀଠ । ଭଞ୍ଜ ରାଜା "କୁଲାଡହ" ପର୍ବତ ମଧ୍ୟ ଭାଗସ୍ଥ ଏକ ପଥର କୋରଡ଼ରେ ଦେବୀଙ୍କୁ ସ୍ଥାପନ କରି ପୂଜାର୍ଚ୍ଚନା କଲେ । ଦେବୀଙ୍କ ଆୟାନଟି ଥିଲା ଭାରି ଦୁର୍ଗମ ଓ ଘନ ଜଙ୍ଗଲପୂର୍ଣ୍ଣ । ଘଞ୍ଚ ଜଙ୍ଗଲ ମଧ୍ୟରେ ଦେବୀଙ୍କୁ ସପ୍ତାହରେ ଥରେ ମାତ୍ର ମଙ୍ଗଳବାର ଦିନ ଭୋଗ ଦିଆଯାଉଥିଲା । ରାଜା ଧନଞ୍ଜୟ ଭଞ୍ଜ ଦେବୀଙ୍କୁ ପର୍ବତର ପାଦ ଦେଶରେ ଏକ ସୁନ୍ଦର ଦେବାଳୟ ସ୍ଥାପନ କରି ପୂଜାର୍ଚ୍ଚନା କରିବାର ଏକ ସୁନ୍ଦର କିମ୍ବଦନ୍ତୀ ରହିଛି ।

ଦିନେ ପୂଜାରୀ ପୂଜାର୍ଚ୍ଚନା ସମାପନ କରି ଫେରିବା ବେଳେ ହଠାତ୍ ଛାଡ଼ି ଆସିଥିବା ଗଡୁଟି ଆଣିବାକୁ ଯାଇ ସେ ଯାହା ଦେଖିଲେ ଖୁବ୍ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେ ଦେଖିଲେ ଯେ ଦେବୀଙ୍କୁ ସମର୍ପଣ କରାଯାଇଥିବା ବଳି ଓ ଚଣ୍ଡ ଚଣ୍ଡୀ, ଶ୍ମଶାନାଦି ଓ ଯୋଗିନୀମାନେ ଭକ୍ଷଣ କରୁଛନ୍ତି । ପୂଜାରୀ ଖୁବ୍ ଭୟଭୀତ ହୋଇ କହିଲା – ମା', ମୁଁ ଫେରିଆସି ଖୁବ୍ ଭୁଲ୍ କରିଛି, ମୋର ଦୋଷ କ୍ଷମା କର । ଦେବୀ ପୂଜାରୀକୁ ସାନ୍ତ୍ୱନା ଦେଇ କହିଲେ, "ପୂଜାରୀ, ତୁମେ ଫେରିଯାଅ । ଏଣିକି ତୁମେ ଆଉ ଉପରକୁ ଆସିବନି । ଏ ଗଡୁଟି ଗଡ଼ିଗଡ଼ି ଯାଇ ଯେଉଁଠାରେ ପଡ଼ିବ ସେଠାରେ ହିଁ ମୋତେ ପୂଜାର୍ଚ୍ଚନା କରିବ ।" ହଠାତ୍ ପୂଜାରୀ ଦେଖିଲେ ଗଡୁଟି ବାରହାତ ଖାଲରେ ପଡ଼ିଛି । ପୂଜାରୀ ରାଜାଙ୍କୁ ଏହା ଜଣାଇବା ପରେ ରାଜା ଧନଞ୍ଜୟ ଭଞ୍ଜ ଗଡୁଟି ପଡ଼ିଥିବା ସ୍ଥାନରେ ଏକ ମନୋରମ୍ୟ ମନ୍ଦିର ନିର୍ମାଣ କରି ଦେବୀଙ୍କୁ ସ୍ଥାପନ କଲେ । ସ୍ଥାପିତ ମୂର୍ତ୍ତିଟିରେ ଦେବୀଙ୍କ ବାହାନ ବ୍ୟାଘ୍ର ଗୋଟିଏ ଶବକୁ ମାଡ଼ିବସିଛି ଏବଂ ଅଷ୍ଟଭୁଜା ଦେବୀ ହସ୍ତରେ ଧନୁର୍ବାଣ ଧାରଣ କରି ବ୍ୟାଘ୍ର ଉପରେ ଉପବେଶନ କରିଛନ୍ତି ।

## ଆରକ୍ତ କାନ୍ତି, ରମଣୀୟ ରୂପ

ବାଗ୍ ଦେବୀ ସିନ୍ଦୂର ଚର୍ଚ୍ଚିତା, ରକ୍ତ ନେତ୍ରା, ରକ୍ତ ବସ୍ତ୍ରା, ରକ୍ତ ବର୍ଣ୍ଣା ଏବଂ ଭୁବନମୋହିନୀ ବେଶରେ ବିରାଜିତା । ଦେବୀଙ୍କ ନିକଟରେ ପାର୍ଶ୍ୱ ଦେବତା ଗ୍ରାମ ଦେବତୀଙ୍କ ଆସ୍ଥାନ । ଛେଳି ବା କୁକୁଡ଼ା ବଳି ପ୍ରଥମେ ବାକ୍ ଦେବୀଙ୍କୁ ସମର୍ପଣ ପରେ ଗ୍ରାମ ଦେବତୀଙ୍କ ଆଗରେ ବଳି ଖୁଣ୍ଟ ନିକଟରେ ବଳି ଦିଆଯାଏ । ଦେବୀଙ୍କ ସମ୍ମୁଖରେ ଜଗମୋହନ, ଯଜ୍ଞ ମଣ୍ଡପ ଓ ରୋଷ ଘର ନିର୍ମିତ । ଗମ୍ଭୀରାଟି ବି ମାର୍ବଲ ପ୍ରସ୍ତରରେ ନିର୍ମିତ । ମନ୍ଦିର ନିକଟସ୍ଥ ପ୍ରାକୃତିକ ପରିବେଶ ଅତ୍ୟନ୍ତ ରମଣୀୟ । ଅନତି ଦୂରରେ ଭଞ୍ଜ ରାଜାଙ୍କର ଭଗ୍ନାବଶେଷ ରାଜ ପ୍ରାସାଦର ଚିହ୍ନ ଦୃଷ୍ଟିଗୋଚର ହୁଏ । ଭଞ୍ଜ ରାଜାଙ୍କ ଅବିସ୍ମରଣୀୟ ପ୍ରମୋଦ ପୀଠ ବେହରଣ ଗୁହଡ଼ା ଦର୍ଶକମାନଙ୍କୁ ବିସ୍ମୟାଭିଭୂତ କରିଥାଏ । ମନ୍ଦିରର ପଶ୍ଚାତ୍ ଭାଗରେ ପ୍ରସିଦ୍ଧ ଜଗନ୍ନାଥ ମନ୍ଦିର । ସମ୍ମୁଖରେ କ୍ଷୁଦ୍ର ଜଳାଶୟ । ପବିତ୍ର ବିଜୟା ଦଶମୀ (ଦଶହରା) ଦିନ ଭଞ୍ଜ ରାଜବଂଶର ଖଣ୍ଡା ଓ ଯୁଦ୍ଧ ଅସ୍ତ୍ରଶସ୍ତ୍ର ଜଳାଶୟରେ ପରିଷ୍କୃତ କରାଯାଇ ଦେବୀଙ୍କଠାରେ ପୂଜା କରାଯାଏ । ତେଣୁ ଏହି ବନ୍ଧଟି ଖଣ୍ଡାଧୂଆ ବନ୍ଧ ଭାବେ ନାମିତ କରାଯାଇଛି ।

ସମ୍ପ୍ରତି ପର୍ବତର ମଧ୍ୟଭାଗ ତଥା ବ୍ୟାଘ୍ର ଦେବୀଙ୍କ ମୂଳ ପୀଠରେ ଟିଣ ପଡ଼ିଥିବା ମଣ୍ଡପଟିଏ ନିର୍ମାଣ କରାଯାଇଛି । ପର୍ବତର ପାଦ ଦେଶରେ ଏକ ବିଶାଳ ବ୍ୟାଘ୍ର ବାହିନୀ ମୂର୍ତ୍ତି ନିର୍ମିତ । ପର୍ବତର ପ୍ରଥମ ପାହାଚ ଚଢ଼ିବା ପରେ ଦୁଇ ପାର୍ଶ୍ୱରେ ଦୁଇଟି ବିଶାଳ ବ୍ୟାଘ୍ର ମୂର୍ତ୍ତି ଦେବୀଙ୍କ ପ୍ରହରୀ ଭାବେ ଦଣ୍ଡାୟମାନ ହୋଇ ଭକ୍ତମାନଙ୍କୁ ସ୍ୱାଗତ ଜଣାଉଛନ୍ତି ।

## ଯୋଗ ପୀଠ, ଭୋଗ ପୀଠ

ପର୍ବତ ଉପରିସ୍ଥ ଦେବୀ ପୀଠକୁ ଯୋଗ ପୀଠ ଏବଂ ନିମ୍ନସ୍ଥ ଦେବୀ ପୀଠକୁ ଭୋଗ ପୀଠ କୁହାଯାଏ । ଗୋଟିଏ ଦେବୀଙ୍କୁ ଦୁଇଟି ସ୍ଥାନରେ ପୂଜା କରିବାର ପଦ୍ଧତି ଓଡ଼ିଶାର ଅନ୍ୟ କୌଣସିଠାରେ ଦେଖାଯାଏ ନାହିଁ । ଦେବୀଙ୍କୁ ତାନ୍ତ୍ରିକ ପଦ୍ଧତିରେ ପୂଜା କରାଯାଏ । କଥିତ ଅଛି : ଭଞ୍ଜ ବଂଶୀୟ ରାଜାମାନେ ବାଗ୍ ଦେବୀଙ୍କ ସ୍ୱପ୍ନାଦେଶ ଲାଭ କରି ଦୀର୍ଘ ଦିନର ରଣ କୌଶଳ ଓ ସାମରିକ ବିଦ୍ରୋହରେ ବିଜୟ ହାସଲ କରିବା ସହ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଛନ୍ତି । ଭଞ୍ଜବଂଶର ଶ୍ରେଷ୍ଠ ରାଜା ଧନଞ୍ଜୟ ଭଞ୍ଜ ବୈଷ୍ଣବ ହେଲେ ବି ଶାକ୍ତ ଉପାସନା ବଳରେ ରଘୁନାଥ ବିଳାସ, ଅନଙ୍ଗ ମଞ୍ଜରୀ, ଇଚ୍ଛାବତୀ, ଅନଙ୍ଗ ରେଖା ଭଳି ପ୍ରସିଦ୍ଧ କାବ୍ୟ ଓ କବିତା ରଚନା କରିଛନ୍ତି । ସେ ବାକ୍ ଦେବୀଙ୍କ ଶରଣାପନ୍ନ ହୋଇ ଭୟଙ୍କର ଯୁଦ୍ଧରେ ଧରାକୋଟକୁ ପରାସ୍ତ କରିଥିଲେ । ଘୁମୁସରର ବିପ୍ଳବୀ ଯୋଦ୍ଧା ଚକ୍ର ବିଷୋୟୀ ଦେବୀଙ୍କୁ ଆରାଧନା କରି ଇଂରେଜ ଆକ୍ରମଣର ଦୃଢ଼ ମୁକାବିଲା କରିଥିଲେ । ଘୁମୁସର ଭଞ୍ଜବଂଶାବଳୀରୁ ଜଣାଯାଏ ଓଡ଼ିଶାର ତତ୍କାଳୀନ ରାଜା ଦ୍ୱିତୀୟ ରାମଚନ୍ଦ୍ରଦେବ ବଙ୍ଗ ନବାବଙ୍କ ଆକ୍ରମଣରୁ ଓଡ଼ିଶାକୁ ରକ୍ଷା କରିବା ପାଇଁ ଘୁମୁସର ରାଜା ଘନ ଭଞ୍ଜଙ୍କ ସାହାଯ୍ୟ ଭିକ୍ଷା କରିଥିଲେ । ଘନ ଭଞ୍ଜ ଲକ୍ଷେ ସୈନ୍ୟ ନେଇ ଯୁଦ୍ଧକୁ ଯାଉଥିବା ବେଳେ ବାଟରେ ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ଘଟିବାରୁ ଘନ ଭଞ୍ଜ ପ୍ରଥମ ବୀରକିଶୋର ଦେବଙ୍କୁ ଗଜପତି ରୂପେ ଅଧିଷ୍ଠିତ କରି ଖୋର୍ଦ୍ଧାଠାରେ ନବାବଙ୍କୁ ଶୋଚନୀୟ ପରାସ୍ତ କରିଥିଲେ ଏବଂ ନବାବଙ୍କର ୫୦୦ ଲୋକଙ୍କୁ ଆଣି ଦେବୀଙ୍କଠାରେ ବଳି ଦେଇଥିଲେ ।

ଉପେନ୍ଦ୍ର ଭଞ୍ଜ ବ୍ୟାଘ୍ର ଦେବୀଙ୍କ ନିକଟରେ ବୀଣାବୀଜ ପୁଟିତ ମାୟାବୀଜ ଜପ କରି ସିଦ୍ଧିଲାଭ କରିଥିବାରୁ ଦେବୀଙ୍କର ଅନ୍ୟ ନାମ ବାଗ୍ ଦେବୀ । ଉପେନ୍ଦ୍ର ଭଞ୍ଜ ଥରେ ଦେବୀଙ୍କ ଦର୍ଶନକୁ ଆସିଥିବା ବେଳେ ଦେବୀଙ୍କ ମୂର୍ତ୍ତି ଦେଖି ଜଣେ ସାଧକ ମୂର୍ଚ୍ଛିତ ହୋଇ ପଡ଼ିଥିବାର ଦେଖିଲେ । ଦେବୀ ବଳି ଦିଅ" ବୋଲି ଚିତ୍କାର କରୁଥାନ୍ତି । ଶୁଣାଯାଏ ଉପେନ୍ଦ୍ର ଭଞ୍ଜ ମୂର୍ଚ୍ଛିତ ସାଧକଙ୍କୁ

ହାଣି ବଳି ଦେଉଥିଲେ । ଦେବୀ ସନ୍ତୁଷ୍ଟ ହୋଇ ବର ପ୍ରଦାନ ବେଳେ ପ୍ରଥମେ ମୋର କବିତ୍ୱ ଜାତ ହେଉ । ଦ୍ୱିତୀୟତଃ ସାଧକର ଜୀବନ ପ୍ରାପ୍ତି ହେଉ ବୋଲି ଉପେନ୍ଦ୍ର ଭଞ୍ଜ ଦେବୀଙ୍କ ନିକଟରେ ପ୍ରାର୍ଥନା କଲେ । "ତଥାସ୍ତୁ" କହି ଦେବୀ ଅନ୍ତର୍ଦ୍ଧାନ ହେଲେ ।

ଅନ୍ୟତଃ ଉପେନ୍ଦ୍ର କିପରି ଜଣେ ପ୍ରତିଭାସମ୍ପନ୍ନ ଜ୍ଞାନୀ ଓ ପଣ୍ଡିତ ହୋଇପାରିବେ, ପିତାମହ ଧନଞ୍ଜୟ ଭଞ୍ଜ ବ୍ୟାଘ୍ର ଦେବୀଙ୍କୁ ଉପାସନା କରିବାକୁ ନିର୍ଦ୍ଦେଶ ଦେଲେ ଏବଂ ଦେବୀଙ୍କ ଆଦେଶକ୍ରମେ ନୟାଗଡ଼ ଓ ଓଡ଼ଗାଁ ଯା଼  କରି ରଘୁନାଥ ମନ୍ଦିରରେ ରାମ ତାରକ ମନ୍ତ୍ର ସିଦ୍ଧି କରି ବୈଦେହୀଶ  ିଳାସ କୋଟି ଲାବଣ୍ୟ ସୁନ୍ଦରୀ ଭଳି କାବ୍ୟ ରଚନା କରି କବି ସମ୍ରାଟ ଉପାଧି ପାଇଥିଲେ ।

ଦେବୀ ପୀଠରେ ପ୍ରତି ସଂକ୍ରାନ୍ତି, ଚୈତ୍ର ମଙ୍ଗଳବାର ଏବଂ ଦଶହରାମାନଙ୍କରେ ଖୁବ୍ ଜନ ସମାଗମ ହୋଇଥାଏ । ଦେବୀଙ୍କଠାରେ ନିଜର ଦୁଃଖ କଷ୍ଟମୋଚନ, ରିପୁ ନାଶ ଓ ମନୋକାମନା ଚରିତାର୍ଥ ପାଇଁ ଅସଂଖ୍ୟ ଭକ୍ତ ଗୁହାରିଆ ପଡ଼ିଥାନ୍ତି । ଦେବୀଙ୍କୁ ସାଧନା କରି ଅନେକ ବ୍ୟକ୍ତି ଓ ସାଧକ ସିଦ୍ଧି ଲାଭ କରିଛନ୍ତି ।

ପ୍ରତି ତିନିବର୍ଷରେ ଥରେ ଭଞ୍ଜନଗରଠାରେ ବାଗ୍ ଦେବୀଙ୍କ ଯାତ୍ରା ଅନୁଷ୍ଠିତ ହୁଏ । କୁଲାଡ଼ଠାରୁ ଦେବୀଙ୍କୁ ବରି ଆଣିବା ପାଇଁ ସେବକମାନେ ବାଦ୍ୟ ବାଜଣା ସହ ଦେବୀଙ୍କୁ ଆବାହନ କରନ୍ତି । ଦେବୀଙ୍କ ମସ୍ତକରୁ ଫୁଲଟିଏ ଖସି ଘଟ ଉପରେ ପଡ଼ିଲେ ଗ୍ରାମବାସୀମାନେ ଦେବୀଙ୍କୁ ପାଛୋଟି ଆଣନ୍ତି । ଯାତ୍ରା ପ୍ରାୟ ଏକମାସ ଧରି ଚାଲିଥାଏ ।

ଦକ୍ଷିଣ ଓଡ଼ିଶାର ପ୍ରଖ୍ୟାତ ଶାକ୍ତ ପୀଠ ବାଗ୍ ଦେବୀ ଏ ଯାବତ୍ ଗବେଷକ ଓ ଅନୁସନ୍ଧିତ୍ସୁମାନଙ୍କ ପାଇଁ ରହସ୍ୟମୟ ଭାବେ ଦଣ୍ଡାୟମାନ । ଏହାର ଉନ୍ନତି  ାଗଲେ ହୁଏତ ଏହି ପୀଠର ଅନେକ ଅନାଲୋଚିତ ଅଧ୍ୟାୟ ଲୋକ ଲୋଚନକୁ ଆଲୋକପାତ କରିପାରନ୍ତା ।

---

ଗ୍ରା/ପୋ: ଅ: ବେଲଗୁମ୍ଫା, ପତ୍ରାପାଢ଼ି,
ଜିଲ୍ଲା–ଗଞ୍ଜାମ ।



ବ୍ରହ୍ମପୁର ଆସିକା ରୋଡ୍ ଗାର୍ଲସ ହାଇସ୍କୁଲଠାରେ ବ୍ରହ୍ମପୁର ଉପଖଣ୍ଡ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଆନୁକୂଲ୍ୟରେ ଆୟୋଜିତ ଜାତୀୟ ଏକତା ଦିବସ ଉଦ୍‌ଯାପିତ ଉତ୍ସବରେ 'ଉତ୍କଳ ପ୍ରସଙ୍ଗ'ର ମୁଖ୍ୟ ସମ୍ପାଦକ, ଶ୍ରୀ ସତୀଶ ପାଢ଼ୀ ।




## ଓଡ଼ିଆ ହସୁଛି

ସମ୍ବଲପୁର ଜିଲ୍ଲାର ଜମନକିରା ପଞ୍ଚାୟତ ସମିତି ଅନ୍ତର୍ଗତ କୁଲୁଣି ଗ୍ରାମ ପଞ୍ଚାୟତର କୁଲୁଣ୍ଡି ଗ୍ରାମର ଶ୍ରୀ ଓଡ଼ିଆ କିଶାନ ଜଣେ ଆଦିବାସୀ ଉନ୍ନତ କ୍ଷୁଦ୍ର ଚାଷୀ ଅଟନ୍ତି । ଶ୍ରୀ କିଶାନ ମାତ୍ର ୬ ଏକର ଜମିରେ ଧାନଚାଷ କରନ୍ତି । ଖରାଟିଆ ଚାଷ କରିବା ପାଇଁ ସେ ୫ ଏଚ୍. ପି: ପାଣି ପମ୍ପ କିଣିବା ପାଇଁ ଜମନକିରା ବି: ଡି: ଓଙ୍କୁ ଆବେଦନ କରିଥିଲେ । ଏଇ ଋଣ ଆଇ: ଟି: ଡି: ଏ: ଯୋଜନାରେ ମଞ୍ଜୁର କରାଯାଇଥିଲା ଓ ଜମନକିରା ସେବା ସମବାୟ ବ୍ୟାଙ୍କ୍ ଜରିଆରେ ଗତ ୧୯୮୬ ମସିହାରେ ୯,୫୦୦ ଟଙ୍କା ପାଣି ପମ୍ପ କିଣିବା ପାଇଁ ପାଇଥିଲେ । ଏଇ ପାଣି ପମ୍ପକୁ ସମ୍ବଲପୁରରୁ କିଣିଥିଲେ ।

ପାଣି ପମ୍ପ କିଣିବା ପୂର୍ବରୁ ପାଣି ଅଭାବରୁ ତାଙ୍କର ଧାନ ମରିଯାଉଥିଲା ଓ ବାର୍ଷିକ ପ୍ରାୟ ୧,୫୦୦ ଟଙ୍କାରୁ ୨,୦୦୦ ଟଙ୍କା ମାତ୍ର ଲାଭ ପାଉଥିଲେ । କିନ୍ତୁ ବର୍ତ୍ତମାନ ତାଙ୍କର ପାଣି ପାଇଁ ଆଉ କିଛି ଚିନ୍ତା ନାହିଁ । ସେହି ଛଅ ଏକର ଜମିରୁ ଆଗରୁ ମାତ୍ର ୧୯ କ୍ୱିଣ୍ଟାଲ୍ ଧାନ ଆଦାୟ କରୁଥିଲେ, ଯାହାକି ବର୍ତ୍ତମାନ ସେ ସେହି ଜମିରୁ ୩୦ କ୍ୱିଣ୍ଟାଲ୍ ଧାନ ଆଦାୟ କରୁଛନ୍ତି । ତାଙ୍କର ବର୍ତ୍ତମାନ ବାର୍ଷିକ ଆୟ ୬,୦୦୦ ଟଙ୍କା ହେଉଛି । ବର୍ତ୍ତମାନ ଟଙ୍କା ସଞ୍ଚୟ କରିବା ସହିତ ପମ୍ପ ପାଇଁ ଯେଉଁ ଋଣ କରିଥିଲେ ତାହା ଦୁଇବର୍ଷ ଭିତରେ ପରିଶୋଧ କରିଦେଲେ । ପମ୍ପର ଋଣ ପାଇଁ ଶତକଡ଼ା ୫୦ ରିହାତି ମଧ୍ୟ ପାଇଥିଲେ ।

ଓଡ଼ିଆ କିଶାନଙ୍କର ପରିବାର କହିଲେ ପୁଅ ଓ ସ୍ତ୍ରୀ ସହିତ ତାଙ୍କର ବାପା, ମା' ଓ ଭାଇ, ଭାଇଙ୍କ ସ୍ତ୍ରୀ, ଭଉଣୀଙ୍କ ସମେତ ୯ ଜଣ ପରିବାରଙ୍କର ଭରଣ ପୋଷଣ ଦାୟିତ୍ୱ ସେ ନିଜେ ବହନ କରୁଛନ୍ତି । ଦୁଇ ପୁଅ ମଧ୍ୟରୁ ଜଣେ ଅଷ୍ଟମ ଓ ଅନ୍ୟଟି ପଞ୍ଚମ ଶ୍ରେଣୀରେ ପାଠ ମଧ୍ୟ ପଢୁଛନ୍ତି । ବର୍ତ୍ତମାନ ଓଡ଼ିଆ କିଶାନ ଆଗ ଅପେକ୍ଷା ତାଙ୍କର ପରିବାରକୁ ସୁଖରେ ଚଳାଉଛନ୍ତି ।

ପାଣି ପମ୍ପର ଋଣ ପରିଶୋଧ କରିସାରିଲା ପରେ ଜମନକିରା ବି: ଡି: ଓ: ପଞ୍ଚାୟତ ସମିତିରୁ ଓଡ଼ିଆ କିଶାନଙ୍କୁ ପୁଣି ଗତବର୍ଷ ୧୯୯୦ ମସିହାରେ ଜୀବନଧାରା ଯୋଜନାରେ ଏକ କୂଅ ଖୋଳିବା ପାଇଁ ୫,୦୦୦ ଟଙ୍କା ପ୍ରଦାନ କରିଛନ୍ତି । କୂଅଟି ଖୋଳା ସରିଲାଣି । ଯାହାକି ସବୁଦିନ ପାଇଁ ତାଙ୍କର ପାଣି ଅଭାବ ଦୂର କରିବ । ଆଗରୁ ସେ କେବଳ ଧାନଚାଷ କରୁଥିଲେ । ବର୍ତ୍ତମାନ ବିଭିନ୍ନ ପନିପରିବା ଚାଷ କରିବା ଯୋଜନା କରୁଛନ୍ତି ।

ସେ ଗୋଟିଏ ସାକ୍ଷାତକାରରେ କହନ୍ତି ଯେ, କ୍ଷୁଦ୍ର ଚାଷୀମାନଙ୍କ ପାଇଁ ସରକାରଙ୍କ ଏଇ ଯୋଜନା ଅତି ଫଳପ୍ରଦ । ମୁଁ ଆଶା କରୁଛି ସରକାରଙ୍କ ଏଇ ଯୋଜନାଗୁଡ଼ିକରୁ ଅନ୍ୟ ଚାଷୀମାନେ ଋଣ ନେଇ ତା'ର ଠିକ୍ ରୂପେ ବିନିଯୋଗ କଲେ ନିଶ୍ଚିତ ଭାବେ ଲାଭବାନ ହୋଇପାରିବେ ।

---

ଶ୍ରୀ ଶମ୍ଭୁ ଶରଣ ଗୋସ୍ୱାମୀ,
ମଣ୍ଡଳ ସଙ୍ଗଠକ, ପଲ୍ଲୀଶ୍ରୋତା ମଣ୍ଡଳୀ ସମୂହ,
ସମ୍ବଲପୁର ।

# ସମ୍ବାଦ ପରିକ୍ରମା

## କଳାହାଣ୍ଡି ଜିଲ୍ଲାରେ ବହୁ ନୂତନ ଶିଳ୍ପ ଗଢ଼ି ଉଠିବ

କଳାହାଣ୍ଡି ଜିଲ୍ଲାର ଅନଗ୍ରସରତା ଦୂର କରି ଜିଲ୍ଲାର ସାମୁହିକ ବିକାଶ ସହ ଲୋକମାନଙ୍କ ଅର୍ଥନୈତିକ ମାନଦଣ୍ଡର ଅଭିବୃଦ୍ଧି ନିମନ୍ତେ ଜିଲ୍ଲାରେ ବହୁ ନୂତନ, ମଧ୍ୟମ ଓ ବୃହତ୍ ଶିଳ୍ପ ପ୍ରତିଷ୍ଠା ଦିଗରେ ରାଜ୍ୟ ସରକାର ଗତିଶୀଳ ପଦକ୍ଷେପ ନେଉଛନ୍ତି ବୋଲି ଶିଳ୍ପ ମନ୍ତ୍ରୀ ଶ୍ରୀ ଦିଲୀପ ରାୟ ପ୍ରକାଶ କରିଛନ୍ତି ।

ସମ୍ପ୍ରତି କଳାହାଣ୍ଡି ଜିଲ୍ଲାର ଡୁମାରପାଣିଠାରେ ୨ କୋଟି ୫୭ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେବାକୁ ଯାଉଥିବା ଏକ ନୂତନ ଶୋଧିତ ଖାଇବା ତେଲ ଓ ମୁଣ୍ଡା ସାବୁନ୍ (ଏଡିବିଲ୍ ରିଫାଇନଡ ଭେଜିଟେବୁଲ୍ ଅଏଲ୍ ଆଣ୍ଡ୍ ସୋପ୍ ୱର୍କ) କାରଖାନାର ଶିଳାନ୍ୟାସ୍ କରି ଶ୍ରୀ ରାୟ କହିଲେ ଯେ ଜିଲ୍ଲାରେ ରହିଥିବା ପ୍ରଚୁର ବକ୍ସାଇଟ୍ ଖଣିଜ ସମ୍ପଦକୁ ବିନିଯୋଗ କରି ଶତକଡ଼ା ୧୦୦ ଭାଗ ରପ୍ତାନୀଯୋଗ୍ୟ ଏକ ମିଲିୟନ୍ ଟନ୍ କ୍ଷମତା ବିଶିଷ୍ଟ ରାଜ୍ୟର ଦ୍ୱିତୀୟ ଆଲୁମିନା ପ୍ରକଳ୍ପ ଖୁବ୍ ଶୀଘ୍ର ନିର୍ମିତ ହେବ । ଏହା ମେସର୍ସ ଲାର୍ସେନ୍ ଆଣ୍ଡ୍ ଟ୍ୟୁବ୍ରୋ ନାମକ ଭାରତର ଏକ ପ୍ରସିଦ୍ଧ ଘରୋଇ ଶିଳ୍ପ ସଂସ୍ଥା ପକ୍ଷରୁ ନିର୍ମାଣ କରାଯିବ । ଏଥିପାଇଁ ଏକ ହଜାର ୬୦୪ କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ଏହା କେନ୍ଦ୍ର ସରକାରଙ୍କ ଅନୁମୋଦନ ପ୍ରତୀକ୍ଷାରେ ରହିଛି । ଏହା ବ୍ୟତୀତ ଆଉ ଏକ ଆଲୁମିନା ପ୍ରକଳ୍ପ ଜିଲ୍ଲାରେ ନିର୍ମାଣ ପାଇଁ ମଧ୍ୟ ପଦକ୍ଷେପ ନିଆଯାଉଛି ବୋଲି ସେ କହିଥିଲେ । ରାଜ୍ୟ ସରକାର କୃଷି ଭିତ୍ତିକ ଶିଳ୍ପ ଉପରେ ଗୁରୁତ୍ୱ ଆରୋପ କରି ରାଜ୍ୟରେ ୨,୫୦୦ ଟନ୍ ଉତ୍ପାଦନକ୍ଷମ ୭ଟି ଚିନିକଳ ପ୍ରତିଷ୍ଠା କରିବା ପାଇଁ ଅଗ୍ରାଧିକାର ଦେଉଛନ୍ତି । ତା' ମଧ୍ୟରେ କଳାହାଣ୍ଡି ଜିଲ୍ଲାର ଧର୍ମଗଡ଼ଠାରେ ପ୍ରତିଷ୍ଠିତ ହେବାକୁ ଯାଉଥିବା ଚିନିକଳ ଅନ୍ତର୍ଭୁକ୍ତ । ଏଥି ନିମନ୍ତେ ଶିଳ୍ପୋଦ୍ୟୋଗୀ ମଧ୍ୟ ଚିହ୍ନଟ କରାଗଲାଣି ବୋଲି ସେ ପ୍ରକାଶ କରିଥିଲେ । ଜିଲ୍ଲାରେ ବହୁ ଶିଳ୍ପ ପ୍ରତିଷ୍ଠା ଫଳରେ ସ୍ଥାନୀୟ ଲୋକଙ୍କ କର୍ମ ନିଯୁକ୍ତିର ବିପୁଳ ସୁଯୋଗ ସୃଷ୍ଟି କରିବ । ଅତୀତରେ ଅନଗ୍ରସରତା ଏବଂ ଅନାହାରଜନିତ ମୃତ୍ୟୁ ସମ୍ପର୍କରେ ପ୍ରକାଶିତ ସମ୍ବାଦ ଯୋଗୁଁ କଳାହାଣ୍ଡି ଜିଲ୍ଲା ସମଗ୍ର ଦେଶରେ ପରିଚିତ ହୋଇଥିଲା । କିନ୍ତୁ ବର୍ତ୍ତମାନ ସେ ପରିସ୍ଥିତିର ପରିବର୍ତ୍ତନ ଘଟିବ ବୋଲି ଦର୍ଶାଇ କଳାହାଣ୍ଡି ଜିଲ୍ଲା ଦେଶର ଶିଳ୍ପ ମାନଚିତ୍ରରେ ଲୋକଙ୍କ ପାଖରେ ପରିଚିତ ହେବ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ସମ୍ବଲପୁର ଜିଲ୍ଲାର ୩ ଜଣ ଉଦ୍ୟୋଗୀ ଶିଳ୍ପୋଦ୍ୟୋଗୀଙ୍କ ଉଦ୍ୟମରେ ମେସର୍ସ ଉତ୍କଳ ସଲ୍‌ଭେଣ୍ଟ୍ ଏକ୍ସଟ୍ରାକସନ୍ ଲିମିଟେଡ୍ ନାମରେ ଗଢ଼ାଯାଉଥିବା ଘରୋଇ ଶିଳ୍ପ ସଂସ୍ଥା ପକ୍ଷରୁ କଳାହାଣ୍ଡି ଜିଲ୍ଲାର ନୂଆପଡ଼ା ନିକଟରେ ଡୁମାରପାଣିଠାରେ ୭ ଏକର ଜମି ଉପରେ ଏହି କାରଖାନା ନିର୍ମିତ ହେଉଛି । ଏଥିରୁ ଦୈନିକ ୫୦ ଟନ୍ ରିଫାଇନଡ ଭେଜିଟେବୁଲ୍ ତେଲ ଉତ୍ପାଦିତ ହେବ । ଖରିଆର ରୋଡ଼ଠାରୁ ଏହାର ଦୂରତା ପ୍ରାୟ ସାଢ଼େ ୩ କିଲୋମିଟର । କାରଖାନାଟି ଓଡ଼ିଶା ଓ ମଧ୍ୟ ପ୍ରଦେଶ ସୀମାରେ ଅବସ୍ଥିତ ଥିବାରୁ କାରଖାନା ପାଇଁ ଆବଶ୍ୟକୀୟ କଞ୍ଚାମାଲ୍ ଉଭୟ ରାଜ୍ୟର ସମ୍ପୃକ୍ତ କାରଖାନାମାନଙ୍କରୁ ସଂଗୃହୀତ ହୋଇପାରିବ । ରିଫାଇନଡ ଭେଜିଟେବୁଲ୍ ତେଲର ଚାହିଦା ଦିନକୁ ଦିନ ବୃଦ୍ଧି ପାଉଥିବା ଦୃଷ୍ଟିରୁ ଉତ୍ପାଦିତ ଦ୍ରବ୍ୟ ପାଇଁ ଉପଯୁକ୍ତ ବଜାରର ଅଭାବ ରହିବ ନାହିଁ ବୋଲି କୁହାଯାଉଛି ।

ଆସନ୍ତା ନଅମାସ ମଧ୍ୟରେ କାରଖାନାର ନିର୍ମାଣ ସମ୍ପୂର୍ଣ୍ଣ ହୋଇ ଉତ୍ପାଦନକ୍ଷମ ହେବ ବୋଲି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହି କାରଖାନାରେ ଉଭୟ କୁଶଳୀ ଓ ଅଣ-କୁଶଳୀ କର୍ମଚାରୀ ମିଶି ପ୍ରାୟ ୧୦୦ ପର୍ଯ୍ୟନ୍ତ ଲୋକ କର୍ମ ନିଯୁକ୍ତି ପାଇପାରିବେ ବୋଲି ଜଣାଯାଉଛି ।

## ଶକ୍ତି ମନ୍ତ୍ରୀଙ୍କ ଦ୍ୱାରା ବିଭିନ୍ନ ଜିଲ୍ଲା ଗ୍ରାମ୍ୟ ବିଦ୍ୟୁତ୍‌କରଣ କାର୍ଯ୍ୟକ୍ରମର ଅଗ୍ରଗତି ସମୀକ୍ଷା

ଶକ୍ତି ରାଷ୍ଟ୍ରମନ୍ତ୍ରୀ ଶ୍ରୀ କାଳିନ୍ଦୀ ଚରଣ ବେହେରା ଅକ୍ଟୋବର ମାସ ୨୫ ତାରିଖଠାରୁ ୨୯ ତାରିଖ ପର୍ଯ୍ୟନ୍ତ ଢେଙ୍କାନାଳ, ସମ୍ବଲପୁର, ବଲାଙ୍ଗୀର, ସୁନ୍ଦରଗଡ଼ ଓ କେନ୍ଦୁଝର ଜିଲ୍ଲା ଗସ୍ତ କରି ଜିଲ୍ଲାଗୁଡ଼ିକରେ ଗ୍ରାମ୍ୟ ବିଦ୍ୟୁତ୍‌କରଣ କାର୍ଯ୍ୟକ୍ରମର ଅଗ୍ରଗତି ସମୀକ୍ଷା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟକ୍ରମର ଅଗ୍ରଗତି ସମ୍ପର୍କରେ ଅନୁଧ୍ୟାନ କରିଥିଲେ ।



ରାଉରକେଲାଠାରେ ଉତ୍କଳ ସଙ୍ଗୀତ ନାଟକ ଏକାଡେମୀ ଦ୍ୱାରା ଆୟୋଜିତ ନୃତ୍ୟୋତ୍ସବକୁ ସଂସ୍କୃତି ବିଭାଗ ମନ୍ତ୍ରୀ, ଶ୍ରୀ ଶରତ କୁମାର କର ଉଦ୍‌ଘାଟନ କରୁଛନ୍ତି (୨୬/୧୧)।




କ୍ରୀଡ଼ା ବିଭାଗ ମନ୍ତ୍ରୀ, ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ କରାଟେ ପ୍ରତିଯୋଗିତାରେ କୃତି ପ୍ରତିଯୋଗୀମାନଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି (୩/୧୨)।



ଚିଲିକା କୂଳରେ ବୋଇତ ବନ୍ଦାଣ ଉତ୍ସବ ଉପଲକ୍ଷେ ଆୟୋଜିତ ସାଧାରଣ ସଭାରେ ଖାଦ୍ୟ ଓ ଯୋଗାଣ ବିଭାଗ ମନ୍ତ୍ରୀ, ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ, ଅର୍ଥ ମନ୍ତ୍ରୀ, ଶ୍ରୀ ବେଦପ୍ରକାଶ ଅଗ୍ରୱାଲା, ପେନ୍‌ସନ୍ ଓ ଅଭିଯୋଗ ବିଭାଗ ମନ୍ତ୍ରୀ, ଶ୍ରୀ ପ୍ରସନ୍ନ ପାଟଶାଣୀ, ପଶୁ ସମ୍ପଦ ବିକାଶ ବିଭାଗ ମନ୍ତ୍ରୀ, ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଓ ପୁରୀ ଜିଲ୍ଲାପାଳ, ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର ।



ବାଲୁଗାଁ ଚିଲିକା କୂଳରେ ବୋଇତ ବନ୍ଦାଣ ଉତ୍ସବ ଉପଲକ୍ଷେ ନିର୍ମିତ ହୋଇଥିବା ସୁସଜ୍ଜିତ ବୋଇତର ଦୃଶ୍ୟ (୨୧/୧୧) ।



ମାଷ୍ଟର କ୍ୟାଣ୍ଟିନ୍ ଛକଠାରେ ଜାତୀୟ ସଂହତି ପାଇଁ ଶାନ୍ତି ପଦଯାତ୍ରାକୁ ପରିବହନ ବିଭାଗ
ମନ୍ତ୍ରୀ, ଶ୍ରୀ ଭାଗବତ ବେହେରା ଉଦ୍‌ଘାଟନ କରୁଛନ୍ତି (୧୪/୧୧) ।




ଉତ୍କଳ ସାମ୍ବାଦିକ ସଂଘ ଦ୍ୱାରା ଆୟୋଜିତ ଏକ ସଭାରେ ଅବକାରୀ ବିଭାଗ
ରାଷ୍ଟ୍ରମନ୍ତ୍ରୀ, ଶ୍ରୀ ପ୍ରସନ୍ନ କୁମାର ଆଚାର୍ଯ୍ୟ ଉଦ୍‌ବୋଧନ
ଦେଉଛନ୍ତି (୨୪/୧୧) ।



କୋରାପୁଟଠାରେ ଅନୁଷ୍ଠିତ ଅତିବଡ଼ି ଜଗନ୍ନାଥ ଦାସ ଶୀର୍ଷକ ଏକ ଆଲୋଚନା ଚକ୍ର ଉଦ୍‌ଘାଟନୀ ଉତ୍ସବରେ ସଂସ୍କୃତି ବିଭାଗ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଅଭିଭାଷଣ ଦେଉଛନ୍ତି (୯/୧୨)।



ଲୋକ ସଂସ୍କୃତି କେନ୍ଦ୍ର ଦ୍ୱାରା ଭୁବନେଶ୍ୱରଠାରେ ଆୟୋଜିତ ଶିଶୁ ମେଳା, ୧୯୯୧କୁ ଯୋଗାଣ ମନ୍ତ୍ରୀ, ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଉଦ୍‌ଘାଟନ କରୁଛନ୍ତି (୮/୧୨)।

[illegible] ତାରିଖ ସନ୍ଧ୍ୟାରେ ଶ୍ରୀ ବେହେରା ଢେଙ୍କାନାଳଠାରେ [illegible] ବିଦ୍ୟୁତ୍ କାର୍ଯ୍ୟକ୍ରମର ଅଗ୍ରଗତି ସମ୍ପର୍କରେ ବିଭାଗୀୟ ଯନ୍ତ୍ରୀମାନଙ୍କ ସହିତ ଆଲୋଚନା କରିଥିଲେ । ପରେ [illegible]ଠାରେ ଟି. ଡି. ପି. ଏସ୍. କାର୍ଯ୍ୟକ୍ରମ ସମ୍ପର୍କରେ ସେ ଆଲୋଚନା କରିଥିଲେ । ଏଥିରେ ବିଭାଗୀୟ ଶାସନ ସଚିବ ଶ୍ରୀ [illegible] ରଥ, ଗ୍ରାମ୍ୟ ବିଦ୍ୟୁତ୍କରଣ ମୁଖ୍ୟ ଯନ୍ତ୍ରୀ ଶ୍ରୀ ପି. କେ. ମିଶ୍ର ପ୍ରମୁଖ ଯୋଗ ଦେଇଥିଲେ ।

ପରଦିନ ଶ୍ରୀ ବେହେରା ବୁର୍ଲାଠାରେ ବିଭାଗୀୟ ଯନ୍ତ୍ରୀମାନଙ୍କ ସହ ବଲାଙ୍ଗୀର ଓ ସମ୍ବଲପୁର ଜିଲ୍ଲାର ବିଦ୍ୟୁତ୍କରଣ କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା କରି ବଲାଙ୍ଗୀର ଜିଲ୍ଲାର ବିଦ୍ୟୁତ୍ ଶୁଳ୍କ ଆଦାୟ ଉପରେ ଗୁରୁତ୍ୱ ଆରୋପ କରିଥିଲେ ଏବଂ ବିଦ୍ୟୁତ୍ ଶୁଳ୍କଷର ଆଦାୟ ପାଇଁ ଦୃଢ଼ ପଦକ୍ଷେପ ନେବାକୁ ପରାମର୍ଶ ଦେଇଥିଲେ । ସମ୍ବଲପୁର ଜିଲ୍ଲାର ବିଦ୍ୟୁତ୍ ଶୁଳ୍କ ଆଦାୟ କାର୍ଯ୍ୟକ୍ରମର ସମୀକ୍ଷା କରି ସେ ସନ୍ତୋଷ ପ୍ରକାଶ କରିଥିଲେ । ରେଢ଼ାଖୋଲ ଅଞ୍ଚଳକୁ ଅଗ୍ରାଧିକାର ଭିତ୍ତିରେ ବିଦ୍ୟୁତ୍ ଯୋଗାଣର ସୁବ୍ୟବସ୍ଥା କରିବା ପାଇଁ ଆଲୋଚନାରେ ସ୍ଥିର କରାଯାଇଥିଲା । ମେଡିକାଲ୍ ଓ ଜଳ ଯୋଗାଣ ସଂସ୍ଥାମାନଙ୍କୁ ବିଦ୍ୟୁତ୍ ସରବରାହ ଅବ୍ୟାହତ ରଖିବା ପାଇଁ ସେ ପରାମର୍ଶ ଦେଇଥିଲେ । ଏହା ବ୍ୟତୀତ ପଦ୍ମପୁର ଓ ପାଇକମାଳ ଅଞ୍ଚଳର ବିଦ୍ୟୁତ୍ ସରବରାହର ଉନ୍ନତି ୩/୪ ମାସ ମଧ୍ୟରେ କରାଯିବ ବୋଲି ଆଲୋଚନାରେ ସ୍ଥିର କରାଯାଇଥିଲା । ମନ୍ତ୍ରୀ ସେଦିନ ବୁର୍ଲା ପାୱାର ହାଉସ୍ ଓ ନିର୍ମାଣାଧୀନ ଥର୍ମାଲ୍ ପ୍ଲାଣ୍ଟ ବୁଲି ଦେଖିଥିଲେ ।

ତା'ପରଦିନ ପୂର୍ବାହ୍ନରେ ଶ୍ରୀ ବେହେରା ନିର୍ମାଣାଧୀନ ଇବ୍ ଥର୍ମାଲ୍ ପାୱାର୍ ପ୍ଲାଣ୍ଟର ବିଭିନ୍ନ ଅଞ୍ଚଳ ବୁଲି ଦେଖିଥିଲେ । ଏହି ଅବସରରେ ସେ ଓ. ପି. ଜି. ସି.ର କର୍ମଚାରୀମାନଙ୍କ ଅଭାବ ଅସୁବିଧା ସମ୍ପର୍କରେ ପଚାରି ବୁଝିଥିଲେ । ସେଠାରେ ସ୍କୁଲ୍, ଡାକ୍ତରଖାନା, କ୍ଲବ୍, ଚିତ୍ତବିନୋଦନ କେନ୍ଦ୍ର ସ୍ଥାପନ ନିମନ୍ତେ ସମ୍ପୃକ୍ତ କର୍ମକର୍ତ୍ତାଙ୍କୁ ସେ ନିର୍ଦ୍ଦେଶ ଦେଇଥିଲେ ।

୨୮ ତାରିଖରେ ଶ୍ରୀ ବେହେରା ରାଉରକେଲାଠାରେ ସୁନ୍ଦରଗଡ଼ ଜିଲ୍ଲାର ଗ୍ରାମ୍ୟ ବିଦ୍ୟୁତ୍କରଣ, ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ଏବଂ ବିଦ୍ୟୁତ୍ ଶୁଳ୍କ ପୈଠର ସମୀକ୍ଷା କରିଥିଲେ । ଶକ୍ତି ବିଭାଗ ଅତିରିକ୍ତ ଶାସନ ସଚିବ, ଗ୍ରାମ୍ୟ ବିଦ୍ୟୁତ୍କରଣ ଚିଫ୍ ଇଞ୍ଜିନିୟର, ଅଧିକ୍ଷଣ ଯନ୍ତ୍ରୀ ଓ ନିର୍ବାହୀ ଯନ୍ତ୍ରୀ ପ୍ରମୁଖ ଏଥିରେ ଭାଗ ନେଇଥିଲେ । ବୋର୍ଡ଼ର ଆର୍ଥିକ ଦୁରାବସ୍ଥା ସୁଧାରିବା ପାଇଁ ନିୟମିତ ଭାବେ ବିଦ୍ୟୁତ୍ ଶୁଳ୍କ ଆଦାୟ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ବିଶେଷ କରି ବଡ଼ ବଡ଼ ଶିଳ୍ପ, କାରଖାନା ଓ ହୋଟେଲମାନଙ୍କରେ ଅଧିକ ବିଦ୍ୟୁତ୍ ଶକ୍ତି ବିନିଯୋଗ ହେଉଥିବାରୁ ମାଲିକମାନଙ୍କ ପାଖରୁ ନିୟମିତ ଭାବେ ବିଦ୍ୟୁତ୍ ଶୁଳ୍କ ଆଦାୟ କରିବାକୁ ସେ ସମ୍ପୃକ୍ତ କର୍ମକର୍ତ୍ତାମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଦୀର୍ଘଦିନ ଧରି ବକେୟା ରଖିଥିବା ବିଦ୍ୟୁତ୍ ବ୍ୟବହାରକାରୀଙ୍କ ବିରୁଦ୍ଧରେ ଆଇନ ଅନୁଯାୟୀ ପଦକ୍ଷେପ ନେବାକୁ ସେ ପରାମର୍ଶ ଦେଇଥିଲେ ।

ସେହିପରି ୨୯ ତାରିଖ ଦିନ ଶକ୍ତି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ବେହେରା କେନ୍ଦୁଝରଠାରେ ଜିଲ୍ଲାର ଗ୍ରାମ୍ୟ ବିଦ୍ୟୁତ୍କରଣ ଓ ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ସମ୍ପର୍କରେ ଆଲୋଚନା କରିଥିଲେ । ଜିଲ୍ଲାରେ ଶୁଳ୍କ ଠିକ୍ ଭାବେ ଆଦାୟ ହେଉନଥିବା ଜାଣି ସେ ଅସନ୍ତୋଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏ ଦିଗରେ ତୁରନ୍ତ ପଦକ୍ଷେପ ନେବା ପାଇଁ ବିଭାଗୀୟ କର୍ମକର୍ତ୍ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

## ଜଙ୍ଗଲ ସୁରକ୍ଷା ଦିଗରେ ବଡ଼ପାରି ଗ୍ରାମବାସୀଙ୍କ ଉଦ୍ୟମ ପ୍ରଶଂସନୀୟ

ପୁରୀ ଜିଲ୍ଲା ଟାଙ୍ଗୀ ବ୍ଲକର ବଡ଼ପାରିଠାରେ ଗିରି ଗୋବର୍ଦ୍ଧନ ଜଙ୍ଗଲ କମିଟିର ଦଶମ ବାର୍ଷିକ ଉତ୍ସବ ଏହା ମଧ୍ୟରେ ବିପୁଳ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ଅନୁଷ୍ଠିତ ହୋଇଛି ।

ଜଙ୍ଗଲ ଓ ପରିବେଶ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଏହି ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ ଜଙ୍ଗଲ ସୁରକ୍ଷା ଓ ରକ୍ଷଣାବେକ୍ଷଣ ପାଇଁ ସ୍ଥାନୀୟ ଜନସାଧାରଣଙ୍କ ଉଦ୍ୟମର ଭୂୟସୀ ପ୍ରଶଂସା କରିଥିଲେ । ଜଙ୍ଗଲର ରକ୍ଷଣାବେକ୍ଷଣ ଏବଂ ପରିବେଶର ସୁରକ୍ଷା ଦିଗରେ ସରକାରଙ୍କ ପକ୍ଷରୁ ଗ୍ରହଣ କରାଯାଉଥିବା ବିଭିନ୍ନ ପଦକ୍ଷେପ ସମ୍ପର୍କରେ ଆଲୋକପାତ କରି ସ୍ଥାନୀୟ ଜନସାଧାରଣଙ୍କ ବିଭିନ୍ନ ଦାବୀ ସମ୍ପର୍କରେ ସରକାର ସହାନୁଭୂତି ସହକାରେ ବିଚାର କରିବେ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ । ନୂତନ ଜଙ୍ଗଲ ସୃଷ୍ଟି ସହ ଜଙ୍ଗଲର ରକ୍ଷଣାବେକ୍ଷଣ ଓ ପରିବେଶର ସୁରକ୍ଷା ଦିଗରେ ସ୍ଥାନୀୟ ଜନସାଧାରଣ ସେମାନଙ୍କ ଉତ୍ତମ କାର୍ଯ୍ୟ ଦ୍ୱାରା ରାଜ୍ୟର ଅନ୍ୟମାନଙ୍କ ଆଦର୍ଶ ହେବା ପାଇଁ ସେ ଆହ୍ୱାନ ଜଣାଇଥିଲେ ।

ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଏହି ଉତ୍ସବରେ ମୁଖ୍ୟବକ୍ତା ଭାବରେ ଯୋଗ ଦେଇ କହିଲେ ଯେ ସେ ଏ ଅଞ୍ଚଳର ପ୍ରତିନିଧି । ତେଣୁ ଜଙ୍ଗଲ ଓ ପରିବେଶ ସୁରକ୍ଷା ପାଇଁ ଜନସାଧାରଣଙ୍କ ସମ୍ମିଳିତ ସଫଳ ପ୍ରଚେଷ୍ଟା ଯୋଗୁଁ ସେ ଗର୍ବିତ । ଜଙ୍ଗଲର ରକ୍ଷଣାବେକ୍ଷଣ ସହ ପରିବେଶ ସୁରକ୍ଷା ପାଇଁ ନିଜସ୍ୱ ଉଦ୍ୟମରେ ନୂତନ ଜଙ୍ଗଲ ସୃଷ୍ଟି ଦିଗରେ ଜନସାଧାରଣଙ୍କ ମଧ୍ୟରେ ଆଗ୍ରହ ଜନ୍ମାଇ ଏହି କାର୍ଯ୍ୟକ୍ରମ ସଫଳତାର ସହ ଆଗେଇ ନେଇପାରିଥିବା ଯୋଗୁଁ ଶ୍ରୀ ହରିଚନ୍ଦନ ଗିରି ଗୋବର୍ଦ୍ଧନ ଜଙ୍ଗଲ କମିଟି ସଭ୍ୟମାନଙ୍କୁ ଅଭିନନ୍ଦନ ଜ୍ଞାପନ କରିଥିଲେ । ବର୍ଷା ପରେ ପାଞ୍ଚ ନମ୍ବର ଜାତୀୟ ରାଜପଥଠାରୁ ବଡ଼ପାରି ପର୍ଯ୍ୟନ୍ତ ଥିବା ଦୁଇ କିଲୋମିଟର ରାସ୍ତାର ଆବଶ୍ୟକୀୟ ମରାମତି ପାଇଁ ବିହିତ ପଦକ୍ଷେପ ନିଆଯିବ ବୋଲି ଶ୍ରୀ ହରିଚନ୍ଦନ କହିଥିଲେ ।

ବଡ଼ପାରି ହାଇସ୍କୁଲ ପ୍ରାଙ୍ଗଣରେ ଅନୁଷ୍ଠିତ ଏହି ସଭାରେ ଗିରି ଗୋବର୍ଦ୍ଧନ ଜଙ୍ଗଲ କମିଟିର ସଭାପତି ଶ୍ରୀ ଉଦୟନାଥ ମହାରଣା ସଭାପତିତ୍ୱ କରିଥିଲେ । ପୂର୍ବରୁ ଯୁବନେତା ଶ୍ରୀ ଚିତ୍ତରଞ୍ଜନ ଭ୍ରମରବର ରାୟ ସ୍ୱାଗତ ଭାଷଣ ଦେଇଥିଲେ ଏବଂ ସମ୍ପାଦକ ଶ୍ରୀ ଲକ୍ଷ୍ମୀଧର ଝପଟସିଂହ ବିବରଣୀ ପ୍ରଦାନ କରି ଏହି ଗ୍ରାମର ଲୋକମାନଙ୍କ ସମ୍ମିଳିତ ପ୍ରଚେଷ୍ଟା ଓ ନିଷ୍ଠାପର ଉଦ୍ୟମ ଫଳରେ ୭୦୦ ଏକର ଜମିରେ ଗଢ଼ି ଉଠିଥିବା ଜଙ୍ଗଲର ସୁରକ୍ଷା ସହ ନୂତନ ଜଙ୍ଗଲ ସୃଷ୍ଟି ହୋଇପାରିଛି ବୋଲି ପ୍ରକାଶ କରିଥିଲେ । ଏହି

ଜଙ୍ଗଲକୁ "ଅଭୟାରଣ୍ୟ" ରୂପେ ସରକାର ଘୋଷଣା କରିବାକୁ ସେ ଦାବୀ କରିଥିଲେ । ଏହା ବ୍ୟତୀତ ସପ୍ତସିଂହ ନଦୀ ଉପରେ ଭୂଇଁବନ୍ଧ ବନ୍ଧ ନିର୍ମାଣ କରାଯାଇ ଜଳସେଚନର ସୁବିଧା ଯୋଗାଇ ଦେବାକୁ ଗ୍ରାମବାସୀଙ୍କ ପକ୍ଷରୁ ଦାବୀ କରାଯାଇଥିଲା ।

ଅନ୍ୟମାନଙ୍କ ମଧ୍ୟରେ ସ୍ଥାନୀୟ ଗ୍ରାମ ପଞ୍ଚାୟତର ପୂର୍ବତନ ସରପଞ୍ଚ ଏହି ସଭାରେ ଭାଷଣ ଦେଇ ଅଞ୍ଚଳର ବିଭିନ୍ନ ସମସ୍ୟା ସମ୍ପର୍କରେ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଶେଷରେ ଶ୍ରୀ ପ୍ରଭାକର ସାମନ୍ତରାୟ ଧନ୍ୟବାଦ ଅର୍ପଣ କରିଥିଲେ ।

ପୂର୍ବରୁ ମନ୍ତ୍ରୀ ଦ୍ୱୟଙ୍କୁ ଜନସାଧାରଣଙ୍କ ପକ୍ଷରୁ ଏକ ବିରାଟ ଶୋଭାଯାତ୍ରାରେ ସଭାସ୍ଥଳକୁ ନିଆଯାଇଥିଲା । ଏହି ସଭାରେ ପାଞ୍ଚ ହଜାରରୁ ଉର୍ଦ୍ଧ୍ୱ ଲୋକ ଯୋଗ ଦେଇଥିଲେ ।

## ଜଙ୍ଗଲ ସମ୍ପଦର ସୁପରିଚାଳନା, ସୁରକ୍ଷା ଓ ଅଭିବୃଦ୍ଧି ପାଇଁ ନିର୍ଦ୍ଦିଷ୍ଟ ନୀତି ନିର୍ଦ୍ଧାରଣ କରାଯିବ ।

ରାଜ୍ୟର ଜଙ୍ଗଲ ସମ୍ପଦର ସୁପରିଚାଳନା, ସୁରକ୍ଷା ଓ ଅଭିବୃଦ୍ଧି ସହ ପରିବେଶର ସୁରକ୍ଷା ଏବଂ ବନ୍ୟପ୍ରାଣୀଙ୍କ ସଂରକ୍ଷଣ ଉଦ୍ଦେଶ୍ୟରେ ସରକାର ଏକ ନିର୍ଦ୍ଦିଷ୍ଟ ନୀତି ନିର୍ଦ୍ଧାରଣ କରିବେ ବୋଲି ଜଙ୍ଗଲ ଓ ପରିବେଶ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ପ୍ରକାଶ କରିଛନ୍ତି ।

ଆଜି ଭୁବନେଶ୍ୱରଠାରେ ଜଙ୍ଗଲ ଓ ପରିବେଶ ବିଭାଗ ପକ୍ଷରୁ ଆଗାମୀ ୨୦୦୧ ମସିହା ସୁଦ୍ଧା ବୃକ୍ଷ ରୋପଣ କୌଶଳ ସମ୍ପର୍କରେ ଆୟୋଜିତ କର୍ମଶାଳା ଉଦ୍‌ଘାଟନ କରି ଶ୍ରୀ ବକ୍ସିପାତ୍ର କହିଲେ ଯେ ଜଙ୍ଗଲ ସମ୍ପଦ ଉପରେ ନିର୍ଦ୍ଦିଷ୍ଟ ଭାବେ କୌଣସି ନୀତି ନାହିଁ । ଗତ ୧୯୮୦-୮୧ ମସିହାରେ ପ୍ରଣିତ କଞ୍ଜରଭେସନ୍ ଆକ୍ଟ ପରେ କିପରି ଭାବରେ ଗଠିତ କରାଯିବ, ତାହା ମଧ୍ୟ ଏ ପର୍ଯ୍ୟନ୍ତ ସ୍ଥିର ହୋଇନାହିଁ । ଯେପରି ଭାବରେ ଜଙ୍ଗଲ ସମ୍ପଦର କ୍ଷୟକ୍ଷତି ହେଉଛି, ତାକୁ ରୋକିବା ପାଇଁ ଫଳପ୍ରଦ ପ୍ରତିକାର ବ୍ୟବସ୍ଥା ସମ୍ପର୍କରେ ମଧ୍ୟ ନିର୍ଦ୍ଦିଷ୍ଟ ପନ୍ଥା ସ୍ଥିର କରାଯାଇପାରି ନାହିଁ । କେବଳ ଆପତ୍ତି ଅଭିଯୋଗ କ୍ଷେତ୍ରରେ କିଛି ଅସ୍ଥାୟୀ ବ୍ୟବସ୍ଥା ଗ୍ରହଣ କରାଯାଉଛି । ସ୍ଥାୟୀ ନିଷ୍ପତ୍ତି କିଛି ସ୍ଥିର ହୋଇପାରି ନାହିଁ । କେନ୍ଦ୍ର ସରକାରଙ୍କ ନିର୍ଦ୍ଦେଶ କ୍ରମେ କିଛିଟା କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । କିନ୍ତୁ ତାହା ଯଥେଷ୍ଟ ନୁହେଁ । ସେଥିପାଇଁ ଆମକୁ ନିର୍ଦ୍ଦିଷ୍ଟ ନୀତି ନିର୍ଦ୍ଧାରଣ କରି ସେ ଅନୁଯାୟୀ କାର୍ଯ୍ୟ କରିବାକୁ ଚିନ୍ତା କରାଯାଉଛି । ସେଥିପାଇଁ ଆଜିର ଆଲୋଚନା ଚକ୍ର ଅନୁଷ୍ଠିତ ହେଉଛି । ଦୀର୍ଘଦିନ ଧରି କ୍ଷେତ୍ରରେ କାର୍ଯ୍ୟ କରୁଥିବା ଜଙ୍ଗଲ ବିଭାଗ କର୍ମଚାରୀମାନେ ସେମାନଙ୍କର ସ୍ୱଚ୍ଛ ମତାମତ ଓ ଚିନ୍ତାଧାରା ପ୍ରକାଶ କରିବା ପାଇଁ ସେ ଆହ୍ୱାନ ଦେଇଥିଲେ । ବୃକ୍ଷ ରୋପଣ କାର୍ଯ୍ୟକ୍ରମ ସମ୍ପର୍କରେ ଉଲ୍ଲେଖ କରି ସେ କହିଲେ ଯେ ବର୍ତ୍ତମାନ ଏହି କାର୍ଯ୍ୟକ୍ରମ ସମ୍ପର୍କରେ ଆମକୁ ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେବାକୁ ହେବ । ଜଙ୍ଗଲ ଅଞ୍ଚଳ ଭିତରେ ସାଧାରଣ ଘରୋଇ ବ୍ୟକ୍ତିମାନଙ୍କୁ ବୃକ୍ଷ ରୋପଣ ପାଇଁ ଦାୟିତ୍ୱ ଦିଆଯିବନାହିଁ ବୋଲି ନୂଆ ନିୟମ ହୋଇଥିବା ଦର୍ଶାଇ କେଉଁ ନିର୍ଦ୍ଦିଷ୍ଟ ସଂସ୍ଥା ଜରିଆରେ ଏହା କରାଗଲେ, ସୁଫଳ ମିଳିବ, ତାହା ଆଲୋଚନା କରାଯିବାକୁ ସେ ପରାମର୍ଶ ଦେଇଥିଲେ । ସାମାଜିକ ବନୀକରଣ କାର୍ଯ୍ୟକ୍ରମ ସମ୍ପର୍କରେ ଅନିଶ୍ଚିତତା ଦେଖାଉଥିବା ସୂଚାଇ ଶିଳ୍ପ, ଘରୋଇ ଓ ଗ୍ରାମାଞ୍ଚଳ ଲୋକମାନଙ୍କ ଆବଶ୍ୟକତା ମେଣ୍ଟାଇବା ପାଇଁ ଆବଶ୍ୟକୀୟ ଜଙ୍ଗଲଜାତ ଦ୍ରବ୍ୟ ଉତ୍ପାଦନ ପାଇଁ ବୃକ୍ଷ ରୋପଣ କାର୍ଯ୍ୟକ୍ରମକୁ ସଫଳତାର ସହିତ ଆଗେଇ ନେବାକୁ ହେବ ବୋଲି ସେ କହିଥିଲେ । ଏସବୁ ଦୃଷ୍ଟିରୁ ଆଜିର ଆଲୋଚନା ଚକ୍ର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ଦର୍ଶାଇ ଏହା ରାଜ୍ୟର ସମୃଦ୍ଧି ଦିଗରେ ସହାୟକ ହେବ ବୋଲି ସେ ଆଶା ପ୍ରକାଶ କରିଥିଲେ ।

ସମ୍ମାନିତ ଅତିଥି ଭାବରେ ଯୋଗ ଦେଇ ଜଙ୍ଗଲ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମଙ୍ଗଳା କିଷାନ୍ ଆସନ୍ତା ୨୦୦୧ ମସିହା ସୁଦ୍ଧା ଲୋକମାନଙ୍କ ଆବଶ୍ୟକତା ଅନୁଯାୟୀ ଜଙ୍ଗଲଜାତ ଦ୍ରବ୍ୟ ଯୋଗାଇ ଦେବା ନିମନ୍ତେ ଦୀର୍ଘସ୍ଥାୟୀ ଫଳପ୍ରଦ ବୃକ୍ଷ ରୋପଣ କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଅତୀତର ବିଫଳତାକୁ ଚିନ୍ତା କରି ବର୍ତ୍ତମାନର କାର୍ଯ୍ୟକ୍ରମର ମୂଲ୍ୟାୟନ ସହ ଭବିଷ୍ୟତ କାର୍ଯ୍ୟକ୍ରମର ସଫଳତା ପାଇଁ ସୁଚିନ୍ତିତ ପଦକ୍ଷେପ ନେବାକୁ ସେ ପରାମର୍ଶ ଦେଇଥିଲେ ।

ଓଡ଼ିଶା ଜଙ୍ଗଲ ବିକାଶ ନିଗମର ଅଧ୍ୟକ୍ଷ ଶ୍ରୀ ଅଙ୍ଗିଠୁ ସାହୁ ମଧ୍ୟ ଏହି କର୍ମଶାଳାରେ ଉଦ୍‌ବୋଧନ ଦେଇ ଜଙ୍ଗଲ ସମ୍ପଦର ସୁରକ୍ଷା ଓ ବିକାଶ ଦିଗରେ କର୍ମଶାଳାରେ ଯୋଗ ଦେଇଥିବା ବିଶେଷଜ୍ଞ ଓ ଅଧିକାରୀମାନଙ୍କର ସୁଚିନ୍ତିତ ବିଚାର ପାଇଁ ପରାମର୍ଶ ଦେଇଥିଲେ ।

ଜଙ୍ଗଲ ଓ ପରିବେଶ ବିଭାଗ ଶାସନ ସଚିବ ଶ୍ରୀ ରବୀନ୍ଦ୍ର ମୋହନ ସେନାପତି ପ୍ରାରମ୍ଭିକ ସୂଚନା ଦେଇ ଏ ପ୍ରକାର କର୍ମଶାଳା ଆୟୋଜନର ଉଦ୍ଦେଶ୍ୟ ସମ୍ପର୍କରେ ଆଲୋକପାତ କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ରାଜ୍ୟ ପ୍ରିନିସିପାଲ ଚିଫ୍ କଞ୍ଜରଭେଟର ଓ ଓଡ଼ିଶା ଜଙ୍ଗଲ ବିକାଶ ନିଗମର ପରିଚାଳନା ନିର୍ଦ୍ଦେଶକ ପ୍ରମୁଖ ଏହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଏହି କର୍ମଶାଳାରେ ରାଜ୍ୟ ଜଙ୍ଗଲ ବିଭାଗର ଆଞ୍ଚଳିକ ବନ ସଂରକ୍ଷକମାନେ ମଧ୍ୟ ଯୋଗ ଦେଇଛନ୍ତି ।

## ଆନ୍ଦୋଳନ ଦ୍ୱାରା ନୁହେଁ, ଶିକ୍ଷା ଓ ସହମତି ଦ୍ୱାରା ସାମାଜିକ ସମସ୍ୟାର ସମାଧାନ କରାଯାଉ

ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଗତକାଲି ରାଉରକେଲାର ସିଭିକ୍ ସେଣ୍ଟରଠାରେ ସୁନ୍ଦରଗଡ଼ ସାକ୍ଷରତା ସମିତି ଓ ରାଉରକେଲା ସାକ୍ଷରତା ସମିତି ଆନୁକୂଲ୍ୟରେ ଆୟୋଜିତ ଶିକ୍ଷାକର୍ମୀ ଓ ସ୍ୱେଚ୍ଛାସେବୀମାନଙ୍କର ଏକ ବିରାଟ ସଭା ଗୃହରେ ଯୋଗଦାନ କରିଥିଲେ । ସୁନ୍ଦରଗଡ଼ ଜିଲ୍ଲାକୁ ଏକ ପୂର୍ଣ୍ଣ ସାକ୍ଷର ଜିଲ୍ଲାରେ ପରିଣତ କରିବା ପାଇଁ ଯେଉଁ ଅଭିଯାନ ଆରମ୍ଭ ହୋଇଛି ତାହା ଏପରି ଏକ ଆନନ୍ଦ ଉତ୍ପାଦକ ଓ ଶୃଙ୍ଖଳିତ ଏ ଦେଶର ଭବିଷ୍ୟତ ଉଜ୍ଜ୍ୱଳ ମସୃଣ ବୋଲି ତାଙ୍କର ବିଶ୍ୱାସ ଜାଗ୍ରତ ହୋଇଛିବୋଲି ଶ୍ରୀ ଶର୍ମା ପ୍ରକାଶ କରିଥିଲେ ।

ତାହାର ଶତ୍ରୁଙ୍କୁ ବିତାଡ଼ିତ କରିବା ପାଇଁ ଆନ୍ଦୋଳନ ବା ଧମକ ସାହାଯ୍ୟ ନେଇ ହେବ ମାତ୍ର ସାମାଜିକ୍ ସ୍ତରରେ କିମ୍ବା ପରିବାରରେ ମତାନ୍ତରରୁ ଉଦ୍‌ଭବ ହୋଇଥିବା ବିବାଦଗୁଡ଼ିକର ସମାଧାନ ପାଇଁ ଆନ୍ଦୋଳନ ଆଦୌ ପ୍ରକୃଷ୍ଟ ପନ୍ଥା ନୁହେଁ ବୋଲି ସେ ମତ ପ୍ରକାଶ କରିଥିଲେ । ବାରମ୍ବାର ବୁଝାଇ ସୁଝାଇ ହିତ ଅହିତ, କଲ୍ୟାଣ ଓ ଅକଲ୍ୟାଣ ସମ୍ବନ୍ଧରେ ଜନସାଧାରଣଙ୍କୁ ଅବଗତ କରାଇବାକୁ ପଡ଼ିବ । ରାଜ୍ୟପାଳ ଦେଶର ସମୃଦ୍ଧି ଉପରେ ଆଲୋକପାତ କରି କହିଥିଲେ ଯେ ଆମ ଦେଶ ଆର୍ଥିକ ଦୃଷ୍ଟିରୁ ଆତ୍ମନିର୍ଭରଶୀଳ ହୋଇ ପାରିନାହିଁ । ଜାପାନ ଏ ଭଳି ଏକ ଦେଶ ଯେଉଁଠାରେ କଞ୍ଚାମାଲର ଅଭାବ ଥିବା ସତ୍ତ୍ୱେ ଓଡ଼ିଶା ଓ ତାହାର ପଡ଼ୋଶୀ ବିହାରରେ ପ୍ରଚୁର ପରିମାଣରେ ଗଚ୍ଛିତ ଲୁହାପଥରକୁ ସସ୍ତାରେ କିଣି ପୁନର୍ବାରଯୌଗିକନଜିନିଷ ଆକାରରେ ଏ ଦେଶରେ ବିକ୍ରୟ କରି ପାରୁଛି । ରାଜ୍ୟପାଳ ପ୍ରଶ୍ନ କରିଥିଲେ ଯେ ଏହା କାହିଁକି ସମ୍ଭବପର ହୋଇଛି ? ଆମ ଦେଶର ଲୋକମାନେ ଅକ୍ଷମ ବା ଅସମର୍ଥ ବୋଲି ନୁହେଁ କିମ୍ବା ଆମର ମନିଷା ପ୍ରତିଭାର ମାନଦଣ୍ଡ ବୋଲି ନୁହେଁ । ଲୋକଶକ୍ତିର ବିହିତ ବିନିଯୋଗ ଓ କଠିନ ପରିଶ୍ରମ ସେ ଦେଶକୁ ଏଥିପାଇଁ ଯୋଗ୍ୟ କରିପାରିଛି ।

ରାଜ୍ୟପାଳ ଶିକ୍ଷାର ମହତ୍ତ୍ୱ ଉପରେ ଏହି ଅଭିଯାନରେ ମୁଖ୍ୟ ଅଂଶ ଗ୍ରହଣ କରୁଥିବା ଶିକ୍ଷାକର୍ମୀମାନଙ୍କୁ ବୁଝାଇବା ସଙ୍ଗେ ସଙ୍ଗେ ଅନଗ୍ରସର ଓ ପଛୁଆ ଜାତିର ଲୋକମାନଙ୍କ ମଧ୍ୟରୁ ଉଚ୍ଚ ଶିକ୍ଷା ଦ୍ୱାରା ବହୁ ସଦସ୍ୟ ଦେଶର ଉଚ୍ଚ ସମ୍ମାନର ଅଧିକାରୀ ହୋଇପାରିଛନ୍ତି । ଏହି ମହାନ କାର୍ଯ୍ୟରେ ଯୋଗଦାନ କରି ଆଗାମୀ ଗାନ୍ଧୀ, ଜବାହରଲାଲ, ପଟେଲ ଓ ଇନ୍ଦିରା ସୃଷ୍ଟି କରିବାରେ ସେମାନେ ସହାୟକ ହେଉଥିବାରୁ ସେମାନେ ଧନ୍ୟବାଦର ପାତ୍ର ।

ଉତ୍ତରାଞ୍ଚଳ ରାଜସ୍ୱ କମିଶନର ଶ୍ରୀ କିଣ୍ଡୋ, ଜିଲ୍ଲାପାଳ ଶ୍ରୀ ପି: ସି: ମିତ୍ରଙ୍କ ସହ ରାଜ୍ୟପାଳଙ୍କ ସଚିବ ଓ ମାନ୍ୟଗଣ ବ୍ୟକ୍ତି, ଲୋକ ପ୍ରତିନିଧି ଓ ବହୁ ସାମ୍ବାଦିକ ଏହି କାର୍ଯ୍ୟକ୍ରମରେ ଉପସ୍ଥିତ ଥିଲେ ।

## ସମ୍ବଲପୁର ଜିଲ୍ଲାରେ ଗ୍ରାମ୍ୟ ପାନୀୟ ଜଳ ଯୋଗାଣ କାର୍ଯ୍ୟକ୍ରମ

ଗ୍ରାମ୍ୟ ଉନ୍ନୟନ ବିଭାଗ ପକ୍ଷରୁ ସମଗ୍ର ରାଜ୍ୟରେ ଗ୍ରାମାଞ୍ଚଳ ବିଶୁଦ୍ଧ ପାନୀୟ ଜଳ ଯୋଗାଣ କାର୍ଯ୍ୟକ୍ରମକୁ ବ୍ୟାପକ କରାଯାଇଛି । ତଦନୁଯାୟୀ ସମ୍ବଲପୁର ଜିଲ୍ଲାର ୨୯ଟି ବ୍ଲକ୍‌ର ୩,୫୩୮ଟି ଉଭୟ ଚିହ୍ନିତ ଓ ଅଣ – ଚିହ୍ନିତ ଗ୍ରାମରେ ମୋଟ୍ ୯,୩୦୪ଟି ନଳକୂପ ଖନନ କରାଯାଇଥିବା ସମ୍ପୃକ୍ତ ନିର୍ବାହୀ ଯନ୍ତ୍ରୀଙ୍କ ସୂତ୍ରରୁ ପ୍ରକାଶ । ଏହା ମଧ୍ୟରୁ ୮,୮୨୭ଟି ନଳକୂପ ବର୍ତ୍ତମାନ କାର୍ଯ୍ୟକ୍ଷମ ଅବସ୍ଥାରେ ରହିଥିବା ବେଳେ ୪୭୭ ନଳକୂପ ଅଚଳ ଅବସ୍ଥାରେ ଅଛି ।

ସର୍ବାଧିକ ୬୪୪ଟି ନଳକୂପ ଲକ୍ଷ୍ମଣପୁର ବ୍ଲକ୍‌ରେ ଖନନ କରାଯାଇଛି । ଏହି ବ୍ଲକ୍‌ର ଉଭୟ ଚିହ୍ନିତ ଓ ଅଣ – ଚିହ୍ନିତ ଗ୍ରାମର ସଂଖ୍ୟା ହେଉଛି ୧୪୯ । ଅନ୍ୟାନ୍ୟ ବ୍ଲକ୍ ମଧ୍ୟରୁ ବାରକୋଟ ବ୍ଲକ୍‌ରେ ୩୭୦ଟି, ରିଆମାଳ ବ୍ଲକ୍‌ରେ ୬୦୩ଟି, ଧାନକଉଡା ବ୍ଲକ୍‌ରେ ୩୧୧ଟି, ଗୋବିନ୍ଦପୁର ବ୍ଲକ୍‌ରେ ୩୬୩ଟି, ଜମନକିରା ବ୍ଲକ୍‌ରେ ୪୦୩ଟି, ଝାରସୁଗୁଡା ବ୍ଲକ୍‌ରେ ୨୬୧ଟି, ଯୁଜମରା ବ୍ଲକ୍‌ରେ ୩୨୮ଟି, କୋଚିଣ୍ଡା ବ୍ଲକ୍‌ରେ ୨୮୪ଟି, ଲାଇକେରା ବ୍ଲକ୍‌ରେ ୧୭୦ଟି, କିରିମିରା ବ୍ଲକ୍‌ରେ ୧୪୨ଟି, କୋଲାବିରା ବ୍ଲକ୍‌ରେ ୧୬୭ଟି, ମାନେଶ୍ୱର ବ୍ଲକ୍‌ରେ ୩୪୨ଟି ନଉବୁଜ ବ୍ଲକ୍‌ରେ ୩୩୭ଟି, ନାକ୍‌ଟିଦେଉଳ ବ୍ଲକ୍‌ରେ ୨୨୦ଟି, ରେଢ଼ାଖୋଲ ବ୍ଲକ୍‌ରେ ୨୭୯ଟି ରେଙ୍ଗାଲି ବ୍ଲକ୍‌ରେ ୨୪୮ଟି, ଆସାଭୋନା ବ୍ଲକ୍‌ରେ ୨୯୬ଟି, ଅତାବିରା ବ୍ଲକ୍‌ରେ ୪୬୦ଟି, ବରଗଡ ବ୍ଲକ୍‌ରେ ୪୨୬ଟି, ବରପାଲି ବ୍ଲକ୍‌ରେ ୨୯୪ଟି ଭଟ୍‌ଲି ବ୍ଲକ୍‌ରେ ୩୨୦ଟି ଭେଡେନ୍ ବ୍ଲକ୍‌ରେ ୩୦୭ଟି, ବିଜେପୁର ବ୍ଲକ୍‌ରେ ୨୬୧ଟି, ଗାଇସିଲେଟ୍ ବ୍ଲକ୍‌ରେ ୨୪୯ଟି, ଝାରବନ୍ଧ ବ୍ଲକ୍‌ରେ ୨୪୮ଟି, ପଦ୍ମପୁର ବ୍ଲକ୍‌ରେ ୩୬୯ଟି, ପାଇକମାଳ ବ୍ଲକ୍‌ରେ ୩୭୨ଟି ଏବଂ ସୋହେଲା ବ୍ଲକ୍‌ରେ ୪୬୨ଟି ନଳକୂପ ଖନନ ହୋଇଥିବା ସମ୍ପୃକ୍ତ ନିର୍ବାହୀ ଯନ୍ତ୍ରୀଙ୍କ ସୂତ୍ରରୁ ପ୍ରକାଶ ।

ନଳକୂପଗୁଡ଼ିକ ଅଚଳ ହେଲେ ସେଗୁଡ଼ିକ ତୁରନ୍ତ ମରାମତି କରିବା ପାଇଁ ଫଳପ୍ରଦ ବ୍ୟବସ୍ଥା କରାଯାଇଛି । ଗ୍ରାମ୍ୟ ପାନୀୟ ଜଳ ଯୋଗାଣ ସଂସ୍ଥା ତରଫରୁ ପ୍ରତ୍ୟେକ ୧୦୦ଟି ନଳକୂପ ପାଇଁ ଜଣେ ଲେଖାଏ ବ୍ଲକ୍‌ସ୍ତରୀୟ ଫିଟର ମିସ୍ତ୍ରୀଙ୍କୁ ନିୟୋଜିତ କରାଯାଇଛି । ଏମାନେ ବି:ଡି:ଓ:ଙ୍କ ଅଧୀନରେ ସାଧାରଣତଃ ବ୍ଲକ୍ ଓ ଗ୍ରାମ ପଞ୍ଚାୟତ ସଦର ମହକୁମାମାନଙ୍କରେ ଅବସ୍ଥାପିତ ହୋଇଥାନ୍ତି । ବ୍ଲକ୍‌ସ୍ତରୀୟ ଫିଟର ମିସ୍ତ୍ରୀମାନଙ୍କ ଦ୍ୱାରା ନଳକୂପ ମରାମତି ନହୋଇ ପାରିବା କ୍ଷେତ୍ରରେ ସମ୍ପୃକ୍ତ ନିର୍ବାହୀ ଯନ୍ତ୍ରୀ ଓ ସହକାରୀ ଯନ୍ତ୍ରୀଙ୍କ ଅଧୀନରେ ଅବସ୍ଥାପିତ ମେକାନିକ୍‌ମାନେ ଯାଇ ମରାମତି କରନ୍ତି । ନଳକୂପଗୁଡ଼ିକର ଖନନ ଓ ସୁପରିଚାଳନା ନିମନ୍ତେ ସମ୍ବଲପୁର ଜିଲ୍ଲାକୁ ଦୁଇଟି ଡିଭିଜନ୍, ୬ଟି ସବ୍‌ଡିଭିଜନ୍ ଓ ୨୪ଟି ସେକ୍‌ସନ୍‌ରେ ବିଭକ୍ତ କରାଯାଇଛି । ସମ୍ବଲପୁର ଓ ବୁର୍ଲାଠାରେ ନିର୍ବାହୀ ଯନ୍ତ୍ରୀଙ୍କ ଦାୟିତ୍ୱରେ ଦୁଇଟି ଡିଭିଜନ୍, ସହକାରୀ ଯନ୍ତ୍ରୀଙ୍କ ଦାୟିତ୍ୱରେ ସମ୍ବଲପୁର, ରେଢ଼ାଖୋଲ, ଦେଓଗଡ଼, ବୁର୍ଲା, ବରଗଡ଼, ପଦ୍ମପୁର ଏବଂ ବରପାଲିଠାରେ ୬ଟି ସବ୍‌ଡିଭିଜନ୍ ଏବଂ ସମ୍ବଲପୁର, ରେଢ଼ାଖୋଲ, ମାନେଶ୍ୱର, ଝାରସୁଗୁଡା, ଲକ୍ଷ୍ମଣପୁର, ବ୍ରଜରାଜନଗର, ଦେବଗଡ, କୁଚିଣ୍ଡା, ଜମନକିରା, ବୁର୍ଲା, ହୀରାକୁଦ, ବରଗଡ଼, ଅତାବିରା, ଭଟ୍‌ଲି, ପଦ୍ମପୁର, ପାଇକମାଳ, ସୋହେଲା, ବରପାଲିଠାରେ ଜୁନିୟର ଇଞ୍ଜିନିୟରଙ୍କ ଦାୟିତ୍ୱରେ ସେକ୍ସନଗୁଡ଼ିକ କାର୍ଯ୍ୟ କରୁଛି ।

ପ୍ରକାଶଯୋଗ୍ୟ ଯେ ସମ୍ବଲପୁରଠାରେ ଅବସ୍ଥାପିତ ଜନସ୍ୱାସ୍ଥ୍ୟ ସୁପରିଣ୍ଟେଣ୍ଡିଂ ଇଂଜିନିୟର (ଉତ୍ତରାଞ୍ଚଳ)ଙ୍କ ଉପରେ ଗ୍ରାମାଞ୍ଚଳର ପାନୀୟ ଜଳ ଯୋଗାଣ କାର୍ଯ୍ୟକ୍ରମର କ୍ରିୟାଶୀଳ କାର୍ଯ୍ୟାନୁଷ୍ଠାନ ନ୍ୟସ୍ତ କରାଯାଇଛି । ସମ୍ବଲପୁର ଜିଲ୍ଲା ସମେତ ଢେଙ୍କାନାଳ, ବଲାଙ୍ଗୀର, ସୁନ୍ଦରଗଡ ଓ କେନ୍ଦୁଝର, ଏପରି ମୋଟ୍ ୫ଟି ଜିଲ୍ଲାର ଗ୍ରାମ୍ୟ ପାନୀୟ ଜଳ ଯୋଗାଣ କାର୍ଯ୍ୟକ୍ରମ ତଦାରଖ ଦାୟିତ୍ୱ ମଧ୍ୟ ତାଙ୍କୁ ଦିଆଯାଇଛି ।

ସୂଚନାଯୋଗ୍ୟ ଯେ ଜିଲ୍ଲାର ରାସ୍ତାଘାଟର ସୁବିଧା ନଥିବା ଆଭ୍ୟନ୍ତରୀଣ ଆଦିବାସୀ ଅଧ୍ୟୁଷିତ ଦୁର୍ଗମ ଗ୍ରାମାଞ୍ଚଳ ମାନଙ୍କରେ ବହୁ ଅସୁବିଧାର ସମ୍ମୁଖୀନ ହୋଇ 'କାଲିକ୍ସ ରିଗ୍' ଜରିଆରେ

କଷ୍ଟସାଧ୍ୟ ଉପାୟରେ ନଳକୂପ ଖନନ କରାଯାଉଛି । ଫଳରେ ପାନୀୟ ଜଳ ପାଇଁ ଯୋଉ ଅସୁବିଧାର ସମ୍ମୁଖୀନ ହେଉଥିବା ଆଦିବାସୀ ଓ ସମାଜର ଦୁର୍ବଳ ଶ୍ରେଣୀ ଲୋକମାଙ୍କର ସେ ଅସୁବିଧା ଦୂର ହୋଇପାରିଛି । ସେମାନେ ଆଉ ପାହାଡିଆ ନଦୀ ନାଳ ପ୍ରଭୃତିରୁ ପାନୀୟ ଜଳ ବ୍ୟବହାର ନକରି ବର୍ତ୍ତମାନ ସମ୍ପୂର୍ଣ୍ଣ ଭାବେ ନଳକୂପର ବିଶୁଦ୍ଧ ପାନୀୟ ଜଳ ଉପରେ ନିର୍ଭର କରୁଥିବା ଦେଖାଯାଏ ।

## କୃଷିର ବିକାଶ ଦ୍ୱାରା ଭାରତର ସମୃଦ୍ଧି ତ୍ୱରାନ୍ୱିତ ହୋଇପାରିବ

ରାଜ୍ୟ ହରିଜନ ଓ ଆଦିବାସୀ କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଛୋଟରାୟ ମାଝୀ ସମ୍ପ୍ରତି କେନ୍ଦୁଝର ଜିଲ୍ଲାର କୃଷି ବିଭାଗ ଦ୍ୱାରା ଆୟୋଜିତ "କୃଷି – କୃଷକ ଆଲୋଚନା ଚକ୍ର" ରେ ଯୋଗ ଦେଇ କୃଷିର ବିକାଶ ଦିଗରେ ସରକାର ଗ୍ରହଣ କରୁଥିବା ବିଭିନ୍ନ ବୈପ୍ଳବିକ ପଦକ୍ଷେପ ଉପରେ ଆଲୋକପାତ କରିବା ସଙ୍ଗେ ସଙ୍ଗେ କୃଷିର ବିକାଶ ଦ୍ୱାରା ଦେଶର ସମୃଦ୍ଧି ତ୍ୱରାନ୍ୱିତ ହୋଇପାରିବ ବୋଲି କହିଥିଲେ । ସରକାର ଯୋଗାଉଥିବା ସମସ୍ତ ସୁବିଧା ସୁଯୋଗ ଯେପରି ସମଗ୍ର କୃଷକଙ୍କ ନିକଟରେ ପହଞ୍ଚି ପାରିବ, ସେ ଦିଗରେ ଯତ୍ନଶୀଳ ହେବା ପାଇଁ ସେ ସରକାରୀ କର୍ମଚାରୀମାନଙ୍କୁ ପରାମର୍ଶ ଦେଇଥିଲେ ।

ଝୁମ୍ପୁରା ଓ ସଦର ବ୍ଲକ୍‌ର ଯୋଗାଣ ଉପଦେଷ୍ଟା କମିଟି ବୈଠକରେ ଅଧ୍ୟକ୍ଷତା କରି ଶ୍ରୀ ମାଝୀ ଅତ୍ୟାବଶ୍ୟକ ସାମଗ୍ରୀର ସୁଷମ ବଣ୍ଟନ ନିମନ୍ତେ ସମସ୍ତେ ଉତ୍ସର୍ଗୀକୃତ ମନୋଭାବ ନେଇ କାର୍ଯ୍ୟ କରିବା ପାଇଁ ପରାମର୍ଶ ଦେଇଥିଲେ । ସରକାର ବହୁ କଷ୍ଟଲବ୍ଧ ଜନସାଧାରଣଙ୍କ କର ଟିକସରେ ଗରିବ ଲୋକମାନଙ୍କ ପାଇଁ ଯେଉଁ ରିହାତି ମୂଲ୍ୟରେ ଚାଉଳ ଯୋଗାଇବାର ବ୍ୟବସ୍ଥା କରୁଛନ୍ତି, ଅନେକ ସମୟରେ କେତେକ ଅସାଧୁ ବ୍ୟବସାୟୀ ସେଥିରୁ ଫାଇଦା ଉଠାଇବା ପାଇଁ ଚେଷ୍ଟା କରି ସରକାରଙ୍କୁ ଜନସାଧାରଣଙ୍କ ନିକଟରେ ଉତ୍ତରଦାୟୀ କରୁଛନ୍ତି, ସରକାରୀ କର୍ମକର୍ତ୍ତା ତଥା କର୍ମଚାରୀମାନେ ତା'ର ଦୃଢ ମୁକାବିଲା କରି ସେମାନଙ୍କ ବିରୁଦ୍ଧରେ ଦୃଢ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ସେ ନିର୍ଦ୍ଦେଶ ଦେଇଥିଲେ ।

ଓଡ଼ିଶା, ବିହାର, ବଙ୍ଗଳା ଓ ଆସାମ ପ୍ରଭୃତି ଅଞ୍ଚଳରେ ବସବାସ କରୁଥିବା ଆଦିବାସୀମାନଙ୍କର ସାଂସ୍କୃତିକ ଚେତନାର ବିକାଶ ନିମନ୍ତେ ଗଠିତ "ଆଦିବାସୀ ସୋସିଓ ଏଜୁକେସନାଲ କଲ୍‌ଚରାଲ ଆସୋସିଏସନ୍" ନାମକ ଏକ ସଂସ୍ଥା ଦ୍ୱାରା ସଙ୍ଘର ସଦର କାର୍ଯ୍ୟାଳୟ ରାଇରଙ୍ଗପୁରଠାରେ ଆୟୋଜିତ ବାର୍ଷିକ ଉତ୍ସବରେ ଶ୍ରୀ ମାଝୀ ସମ୍ମାନିତ ଅତିଥି ରୂପେ ଯୋଗ ଦେଇ ବହୁ ପ୍ରାଚୀନ କଳା ଓ ସଂସ୍କୃତିରେ ସମୃଦ୍ଧ ସାନ୍ତାଳୀ ଭାଷାର ବିକାଶ ଉପରେ ଗୁରୁତ୍ୱ ଆରୋପ କରିବା ସଙ୍ଗେ ସଙ୍ଗେ ଏହି ଭାଷାକୁ ଦେଶ ବିଦେଶରେ ପ୍ରଚାର ଓ ପ୍ରସାର କରିବା ପାଇଁ ସଙ୍ଘର ସଭ୍ୟମାନଙ୍କୁ ଆହ୍ୱାନ ଜଣାଇଥିଲେ । ଲିପି ବିହୀନ ଉକ୍ତ ଭାଷାରେ ପ୍ରାଣ ପ୍ରତିଷ୍ଠାତା ତଥା 'ଓଲ୍‌ଚିକି' ଲିପିର ପ୍ରଣେତା ସ୍ୱର୍ଗୀୟ ପଣ୍ଡିତ ରଘୁନାଥ ମୁର୍ମୁଙ୍କର ସ୍ମୃତି ସ୍ମରଣ କରି ଆଜିର ଉଚ୍ଚ ଶିକ୍ଷିତ ଆଦିବାସୀ ଯୁବକମାନେ ତାଙ୍କ ପଦାଙ୍କ ଅନୁସରଣ କରିବା ସଙ୍ଗେ ସଙ୍ଗେ ଏହି ଭାଷାର ବିକାଶ ନିମନ୍ତେ ଯତ୍ନଶୀଳ ହେବାକୁ ସେ ପରାମର୍ଶ ଦେଇଥିଲେ । ହଜାର ଦର୍ଶକଙ୍କ ଗହଣରେ ପ୍ରତିଯୋଗିତାମୂଳକ ଭାବେ ପ୍ରଦର୍ଶିତ ହେଉଥିବା ସାନ୍ତାଳୀ ଭାଷାର ନାଟକ ଉତ୍ସବ ବିଶେଷ ସମୟୋପଯୋଗୀ ତଥା ଉତ୍କର୍ଷତର ବୋଲି ସେ ନିଜର ମତ ପ୍ରକାଶ କରିଥିଲେ । ରାଜ୍ୟ ଶିକ୍ଷାମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ଉକ୍ତ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ ।

ମୟୂରଭଞ୍ଜ ଜିଲ୍ଲାର ବାଘଦା ଅଞ୍ଚଳରେ ବସବାସ କରୁଥିବା ଭଞ୍ଜ ପୁରାଣ ସମ୍ପ୍ରଦାୟର ଲୋକମାନଙ୍କର ସାମାଜିକ ତଥା ଅର୍ଥନୈତିକ ଅଧୋଗତିରୁ ପୁନରୁଦ୍ଧାର ପାଇଁ ଗଠିତ 'ଭଞ୍ଜ ସମିତି' ଆନୁକୂଲ୍ୟରେ ଆୟୋଜିତ ବାର୍ଷିକ ଉତ୍ସବରେ ମୁଖ୍ୟବକ୍ତା ରୂପେ ଯୋଗ ଦେଇ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମାଝୀ ମୟୂରଭଞ୍ଜ ଭଳି ଏକ ସଂସ୍କୃତି ସମ୍ପନ୍ନ ଜିଲ୍ଲାର ସୀମାନ୍ତବର୍ତ୍ତୀ ଅଞ୍ଚଳରେ ଲୋକମାନଙ୍କ ଅର୍ଥନୈତିକ ବିକାଶ ନିମନ୍ତେ ସମସ୍ତେ ସହଯୋଗମୂଳକ ମନୋଭାବ ନେଇ କାର୍ଯ୍ୟ କରିବାକୁ ଆହ୍ୱାନ ଦେଇଥିଲେ ।

ଇତିହାସରେ ପ୍ରସିଦ୍ଧି ଲାଭ କରିଥିବା ଭଞ୍ଜ ବଂଶୀୟ ଶାସକଙ୍କ ରାଜ୍‌ଧାନୀ କେନ୍ଦୁଝର ପୁରୁଣା ସହର ସ୍ଥିତ ଶ୍ରୀ ଗୋପାଳ ଜୀଉ ସାଂସ୍କୃତିକ ସଂସଦ ଦ୍ୱାରା ଆୟୋଜିତ ଭଜନ ସମାରୋହ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ଶ୍ରୀ ମାଝୀ ସଂସ୍କୃତି ସମ୍ପନ୍ନ ପୁରୁଣା ସହରବାସୀ କେନ୍ଦୁଝରର ସାଂସ୍କୃତିକ ଚେତନାର ବିକାଶ ଧାରାକୁ କ୍ଷିପ୍ରତର କରିବା ପାଇଁ ସମ୍ମିଳିତ ଉଦ୍ୟମ କରିବାକୁ ଆହ୍ୱାନ ଜଣାଇଥିଲେ । ଲୋକସଭା ସଦସ୍ୟ ଶ୍ରୀ ଗୋବିନ୍ଦ ମୁଣ୍ଡା ଉକ୍ତ ଉତ୍ସବରେ ଅଧ୍ୟକ୍ଷତା କରିଥିଲେ ।

## ଓଡିଶୀ ନୃତ୍ୟ ପ୍ରବୀଣା କୁମାରୀ ଗୋପା ବିଶ୍ୱାସଙ୍କ ରେଡକ୍ରସ୍ ରାଜ୍ୟ ଶାଖାକୁ ୧୫,୦୦୦ ଟଙ୍କା ପ୍ରଦାନ

ରବୀନ୍ଦ୍ର ମଣ୍ଡପଠାରେ ନୃତ୍ୟ ପ୍ରବୀଣା କୁମାରୀ ଗୋପା ବିଶ୍ୱାସଙ୍କ ଦ୍ୱାରା ରେଡକ୍ରସ୍ ପାଣ୍ଠିକୁ ସାହାଯ୍ୟାର୍ଥେ "ପାୟଲ୍ ସନ୍ଧ୍ୟା"ର କାର୍ଯ୍ୟକ୍ରମରେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ଓଡ଼ିଶାର ସଂସ୍କୃତିମନ୍ତ୍ରୀ ଶ୍ରୀ ଶରତ କୁମାର କର, ରେଡକ୍ରସ୍ ରାଜ୍ୟଶାଖାର ସାଧାରଣ ସମ୍ପାଦିକା ଡକ୍ଟର ରାନୁ ମିଶ୍ର, ପାୟଲ ଅନୁଷ୍ଠାନର ସଭାପତି ଡକ୍ଟର ଏନ୍. ବହିଦାର ଓ ଉପସଭାପତି ଶ୍ରୀ ଏ. କେ. ଦାଶ ଏହି କାର୍ଯ୍ୟକ୍ରମରେ ମଧ୍ୟ ଅଂଶଗ୍ରହଣ କରିଥିଲେ ।

ରେଡକ୍ରସ୍ ଅନୁଷ୍ଠାନକୁ ସାହାଯ୍ୟ କରିବା ନିମନ୍ତେ "ପାୟଲ" ଅନୁଷ୍ଠାନ ଓ କୁମାରୀ ଗୋପା ବିଶ୍ୱାସଙ୍କର ଏହି ମହନୀୟ ଉଦ୍ୟମ ପାଇଁ ରାଜ୍ୟପାଳ ତଥା ରେଡକ୍ରସ୍‌ର ସଭାପତି ଶ୍ରୀ ଶର୍ମା ସାଧୁବାଦ ଜ୍ଞାପନ କରିବା ସହିତ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରିଥିଲେ । ନିଷ୍ଠାପର ଭାବେ ଏହି ଉତ୍ସାହ ଅବ୍ୟାହତ ରଖିବାକୁ

ରାଜ୍ୟପାଳ ପରାମର୍ଶ ଦେଇଥିଲେ । ସଂସ୍ଥିତି ମନ୍ତ୍ରୀ ଶ୍ରୀ କର "ପ୍ରାପ୍ତଲ" ଅନୁଷ୍ଠାନର କର୍ମକର୍ତ୍ତାମାନେ ରେଡକ୍ରସ୍ ପରି ଏକ ମାନବିକ ସଂସ୍ଥାକୁ ସାହାଯ୍ୟ କରିବାପାଇଁ ଏ ଯେଉଁ ପ୍ରଚେଷ୍ଟା କରିଛନ୍ତି ତାହା ବାସ୍ତବିକ ପ୍ରଶଂସନୀୟ ଏବଂ ଏହିପରି ଅନୁଷ୍ଠାନମାନେ ଜନସେବାରେ ଭବିଷ୍ୟତରେ ସହଯୋଗ କରିବାକୁ ସେ ଆଶାପୋଷଣ କରିଥିଲେ ।

କୁମାରୀ ଗୋପା ବିଶ୍ୱାସ ରାଜ୍ୟପାଳଙ୍କ ହାତରେ ୧୫,୦୦୦ ଟଙ୍କାର ଏକ ଚେକ୍ ରେଡ୍‌କ୍ରସ୍ ରାଜ୍ୟ ଶାଖା ପାଇଁ ପ୍ରଦାନ କରିଥିଲେ ।

## ଗଞ୍ଜାମ ଜିଲ୍ଲାରେ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନକୁ ଶିକ୍ଷିତ ଯୁବକ, ମହିଳା, ସ୍ୱେଚ୍ଛାସେବୀମାନେ ଅଗ୍ରସର କରାନ୍ତୁ

ବର୍ତ୍ତମାନ ଗଞ୍ଜାମ ଜିଲ୍ଲାରେ ସାକ୍ଷର ଅଭିଯାନ ଚାଲିଛି । ସେପ୍ଟେମ୍ବର ୮ ରୁ ୧୫ ଅଗଷ୍ଟ ୧୯୯୨ ମସିହା ପର୍ଯ୍ୟନ୍ତ ଏହା କାର୍ଯ୍ୟକରିବ । ଗଞ୍ଜାମ ଜିଲ୍ଲାକୁ ସମ୍ପୂର୍ଣ୍ଣ ସାକ୍ଷର ଜିଲ୍ଲା କରିବାକୁ ଏକ ଦୃଢ଼ ପଦକ୍ଷେପ ଗ୍ରହଣ କରି ଏହି କାର୍ଯ୍ୟକ୍ରମକୁ ହାତକୁ ନେଇ ଆଗେଇଚାଲିଛନ୍ତି । ଏହି କାର୍ଯ୍ୟକ୍ରମରେ ସାରା ଗଞ୍ଜାମ ଜିଲ୍ଲାର ଦଶ ଲକ୍ଷ ଲୋକଙ୍କୁ ୧୯୯୨ ଭିତରେ ସାକ୍ଷର କରିବା ଏକ ଛୋଟିଆ କଥା ନୁହେଁ । କିନ୍ତୁ ଏଥିପାଇଁ ପ୍ରଗାଢ଼ ପରିଶ୍ରମ ଦରକାର । ଏଥିପାଇଁ ଏକ ଲକ୍ଷ ଶିକ୍ଷା ସହାୟକ ବିନା ପାରିଶ୍ରମିକରେ ସ୍ୱେଚ୍ଛାସେବୀ ଭାବରେ ପାଠ ପଢ଼ାଇବେ । ପାଠପଢ଼ା ଅର୍ଥ ନୁହେଁ କେବଳ ନାମ ଲେଖିବା ପଢ଼ିବା, ଲେଖିବା ହିସାବ କରିବା ସାଙ୍ଗକୁ ନିତିଦିନିଆ ଜୀବନରେ ଏହାକୁ ବ୍ୟବହାର କରିପାରିବା ହିଁ ପ୍ରକୃତ ସାକ୍ଷରତା । ନିଜ ପରିବେଶ ଛୋଟ ପରିବାର, ନାରୀ ପୁରୁଷ ସମାନତା, ଜାତୀୟ ସଂହତି ଆଦି ସମ୍ପର୍କରେ ସଚେତନ ହେବା ଆବଶ୍ୟକ । ଆମ ସରକାର, ଦାରିଦ୍ର୍ୟର କାରଣ ଓ ନିରାକରଣ, ସ୍ୱାସ୍ଥ୍ୟଜ୍ଞାନ, ଆଦି ବିଭିନ୍ନ ବିଷୟରେ ଜାଣିବା ଏବଂ ତା ସହିତ ସାକ୍ଷରତା ଅଭିଯାନ ଉପରେ ବିଶ୍ୱାସ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ସହାୟକଙ୍କ ଭିତରେ ଆତ୍ମ ବିଶ୍ୱାସ ସୃଷ୍ଟି କରିବା ଆବଶ୍ୟକ । ତା ଛଡ଼ା ସେମାନେ ମଝିରେ ମଝିରେ ପ୍ରେରଣା ପାଇବା ଦରକାର ବୋଲି ଭଞ୍ଜ ସାକ୍ଷରତା ପରିଷଦ ଗଞ୍ଜାମ ପକ୍ଷରୁ କୁହାଯାଇଛି । ଏଥିରେ ପୁଣି କୁହାଯାଇଛି ଏହାର ଅଭିଯାନର ଆଭିମୁଖ୍ୟରେ ୧୯୯୨ ମସିହା ଅଗଷ୍ଟ ୧୫ ତାରିଖରେ ଜିଲ୍ଲାକୁ ସମ୍ପୂର୍ଣ୍ଣ ସାକ୍ଷର ଜିଲ୍ଲା, ପାରଳାଖେମୁଣ୍ଡି ଉପଖଣ୍ଡକୁ ଛାଡ଼ି ଅନ୍ୟ ତିନୋଟି ଉପଖଣ୍ଡର ସମସ୍ତ ୨୨ଟି ବ୍ଲକ ଓ ଅଠରଗୋଟି ସହରାଞ୍ଚଳକୁ ଏହି ଅଭିଯାନରେ ସମ୍ପୃକ୍ତ କରାଯାଇଛି । ୯ ବର୍ଷରୁ ୪୫ ବର୍ଷର ନିରକ୍ଷରମାନଙ୍କୁ ସାକ୍ଷରତା ଅଭିଯାନ ମାଧ୍ୟମରେ ସାକ୍ଷର କରିବା ଯୋଜନାରେ ରହିଛି ଏବଂ ଜିଲ୍ଲାସ୍ତରରେ ଏକ କମିଟି ଗଢ଼ିଛି । ଏହାର ସଭାପତି ଭାବେ ଜିଲ୍ଲାପାଳ ଶ୍ରୀ ଜଗଦାନନ୍ଦ ପଣ୍ଡା ରହିଛନ୍ତି । ଏହି ପରିଷଦ ଜିଲ୍ଲାପାଳଙ୍କ ବାସଭବନଠାରେ କାର୍ଯ୍ୟ କରୁଛି ଏବଂ ଏଥିରେ ଯେଉଁମାନେ ସହଯୋଗ କରିବାକୁ ଆଗ୍ରହୀ ସେମାନେ ସବୁ ସମୟରେ ଯୋଗାଯୋଗ କରିପାରିବେ । ଦଶ ଲକ୍ଷ ନିରକ୍ଷରଙ୍କ ପାଇଁ ପ୍ରାୟ ଏକ ଲକ୍ଷ ସ୍ୱେଚ୍ଛାସେବୀମାନଙ୍କୁ ଉପଯୁକ୍ତ ତାଲିମ ଦେବାର ସମସ୍ତ ଯୋଜନା କରାଯାଇଛି । ସାର୍ବଜନୀନ ପ୍ରାଥମିକ ଶିକ୍ଷା ତଥା ନବସାକ୍ଷରଙ୍କ ପାଇଁ ପରବର୍ତ୍ତୀ ଶିକ୍ଷାର ଯୋଜନା ରହିଛି । ଏଣୁ ଗଞ୍ଜାମ ଜିଲ୍ଲାର ସ୍ୱେଚ୍ଛାସେବୀ, ଅନୁଷ୍ଠାନ, ଶିକ୍ଷାନୁଷ୍ଠାନ, ଗ୍ରାମ୍ୟ କର୍ମଚାରୀ, ଗାଁ ଓ ସହରର ଶିକ୍ଷିତ ଯୁବକ, ଶିକ୍ଷିତା ମହିଳାମାନେ ନିଜ ନିଜ ଅଞ୍ଚଳରେ ସାକ୍ଷରତା କାର୍ଯ୍ୟକୁ ଅଗ୍ରସର କରିବା ସଙ୍ଗେ ଗାଁ ଗହଳିରେ ନିରକ୍ଷର ଲୋକଙ୍କୁ ସାକ୍ଷରତା କରିବା ଦିଗରେ ଆଗେଇଯିବେ ବୋଲି ଭଞ୍ଜ ସାକ୍ଷରତା ପରିଷଦ ତରଫରୁ କୁହାଯାଇଛି । ଏହା କରିବା ଦ୍ୱାରା କେବଳ ନିରକ୍ଷରତା ନୁହେଁ, ଦାରିଦ୍ର୍ୟ, ଅସ୍ୱାସ୍ଥ୍ୟ, ଅନ୍ଧବିଶ୍ୱାସ ମଣିଷଠାରୁ ଦୂରେଇଯିବ । ଏବଂ ଶିକ୍ଷିତ ଯୁବକ, ଯୁବତୀମାନେ ଜିଲ୍ଲାରେ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନରେ ନିଜକୁ ନିୟୋଜିତ କରି ଅନ୍ୟମାନଙ୍କୁ ଏ ଦିଗରେ ଉତ୍ସାହିତ କରିବାକୁ ପରିଷଦର ସଭାପତି ତଥା ଜିଲ୍ଲାପାଳ ଅନୁରୋଧ କରିଛନ୍ତି ।

ବର୍ତ୍ତମାନ ଏହି କାର୍ଯ୍ୟକ୍ରମରେ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସବ୍-ଡିଭିଜନର ତୁଆ ଗ୍ରାମର ଲୋକମାନେ ସାକ୍ଷରତା କାର୍ଯ୍ୟକ୍ରମରେ ସଫଳ ହୋଇଥିବା ଦେଖାଯାଇଛି । ସେଠାରେ ନିଜେ ଜିଲ୍ଲାପାଳ ଶ୍ରୀ ଜଗଦାନନ୍ଦ ପଣ୍ଡା ରହି ନିରକ୍ଷର ଲୋକମାନେ କିପରି ପଢ଼ିପାରୁଛନ୍ତି ଏବଂ ସାକ୍ଷର ହୋଇପାରୁଛନ୍ତି । ତାହା ସେମାନଙ୍କଠାରୁ ଦେଖିଲେ । ଏବଂ ଉକ୍ତ ଗ୍ରାମକୁ ସାକ୍ଷର ଗ୍ରାମ ହିସାବରେ ଗ୍ରହଣ କରାଯାଇଥିବା ଜଣାପଡ଼ିଛି । ଛତ୍ରପୁର ସବ୍‌ଡିଭିଜନରେ ସାକ୍ଷର କାର୍ଯ୍ୟକ୍ରମକୁ ବ୍ଲକର ବି: ଡି: ଓ: ଶ୍ରୀ ପୂର୍ଣ୍ଣଚନ୍ଦ୍ର ପାଠୀ, ଏନ୍: ଏ: ସି: ନିର୍ବାହୀ ଅଧିକାରୀ, ଶ୍ରୀ ଧ୍ରୁବଚରଣ ସେଠୀ, ଉପଜିଲ୍ଲାପାଳ କୁମାରୀ ସେନାଗୁପ୍ତା, ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ ଶ୍ରୀପୃଷ୍ଟି ଏହି କାର୍ଯ୍ୟକ୍ରମକୁ ଗଣଚେତନା କରାଇବା ଦିଗରେ ପଦକ୍ଷେପ ନେଉଥିବାର ଦେଖାଯାଇଛି । ଏହି କାର୍ଯ୍ୟକ୍ରମକୁ ଭାରତୀୟ ଜ୍ଞାନ ବିଜ୍ଞାନ ପରିଷଦର ଉଚ୍ଚ କର୍ମକର୍ତ୍ତା କେ: କିର୍ଷ୍ଣକୁମାର ଛତ୍ରପୁର ବ୍ଲକର ସାକ୍ଷର କାର୍ଯ୍ୟକୁ ଦେଖି ଖୁସି ହେବା ସଙ୍ଗେ ସଙ୍ଗେ ଶ୍ରୀ କିର୍ଷ୍ଣକୁମାର ଆନାକୁଲମ ଜିଲ୍ଲାଠାରୁ ଏଠାରେ ଅଧିକ ବାତାବରଣ ସୃଷ୍ଟି ହୋଇଥିବା କଥା କହିଥିଲେ । ଏବଂ ଏହାକୁ ସଫଳ କରିବାକୁ ଉପଦେଶ ଦେଇଥିଲେ । ଯଦି ଏହିପରି ସାକ୍ଷରତା କାର୍ଯ୍ୟକ୍ରମ ଚାଲେ ତାହାହେଲେ ଏହି କାର୍ଯ୍ୟକୁ ଅଧିକରୁ ଅଧିକ କାର୍ଯ୍ୟ ପନ୍ଥା ଗ୍ରହଣ କରାଯାଏ ତାହାହେଲେ ସୁନ୍ଦରଗଡ଼ ଜିଲ୍ଲାଠାରୁ ଗଞ୍ଜାମ ଜିଲ୍ଲା ଶତକଡ଼ା ୭୦ ଭାଗ ସାକ୍ଷର ହୋଇ ପାରିବେ ବୋଲି ଆଶା ।

---

ପ୍ରଫୁଲ୍ଲକୁମାର ମିଶ୍ର, ସାମ୍ବାଦିକ,
ବ୍ରହ୍ମପୁର ।

# ଚିନ୍ତା ଓ ଚେତନାର ମହା ସମାବର୍ତ୍ତନ

ରାଜ୍ୟର ପ୍ରଖ୍ୟାତ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ 'ଚିନ୍ତା ଓ ଚେତନା'ର ୧୯୯୦-୯୧ ପାଇଁ ଅନୁଷ୍ଠିତ "ମହା ସମାବର୍ତ୍ତନ-୯୧" ସ୍ଥାନୀୟ ସୂଚନା ଭବନରେ ଗାମ୍ଭୀର୍ଯ୍ୟର ସହ ଅନୁଷ୍ଠିତ ହୋଇଯାଇଛି ।

'ଚିନ୍ତା ଓ ଚେତନା'ର ଅଧକ୍ଷ, ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅନୁପସ୍ଥିତିରେ ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ, କ୍ରୀଡ଼ା ଓ ସଂସ୍କୃତି ମନ୍ତ୍ରୀ, ଶ୍ରୀ ଶରତ କୁମାର କର ଉତ୍ସବକୁ ପ୍ରଦୀପ ଜାଳି ଉଦ୍‌ଘାଟନ କରିଥିଲେ । ସଭାପତିତ୍ୱ କରିଥିଲେ 'ଚିନ୍ତା ଓ ଚେତନା'ର କେନ୍ଦ୍ରୀୟ ସଭାପତି ମନ୍ତ୍ରୀ, ଡକ୍ଟର ପ୍ରସନ୍ନ ପାଟଶାଣୀ ।

ପ୍ରାରମ୍ଭରେ ସୂଚନା ଭବନ ପରିସରରେ ଅତିଥିମାନଙ୍କୁ ତଥା ଉପାଧି, ଉପାୟନ ପାଇଁ ମନୋନିତ ପ୍ରତିଭାଧରମାନଙ୍କୁ 'ଚିନ୍ତା ଓ ଚେତନା'ର ୭୪ ଗୋଟି ଶାଖାରୁ ଆସିଥିବା ପ୍ରାୟ ୫୦୦ ଯୁବକ ଯୁବତୀ, ସ୍କୁଲ ଓ କଲେଜ ଏନ୍‌: ସି: ସି: ଛାତ୍ରଛାତ୍ରୀ ଅଭିବାଦନ ଜଣାଇଥିଲେ । ବର୍ଣ୍ଣାଢ୍ୟ ପରିବେଶରେ ଓଡ଼ିଶୀ ପରମ୍ପରାରେ ସୁସଜ୍ଜିତ ଶଙ୍ଖ ଏବଂ ବନ୍ଦାପନା ଥାଳି ସହିତ ପ୍ରାୟ ୨୦୦ ଯୁବତୀଙ୍କ ଗହଣରେ ଛତିଆିପ, ପାଇକ ଏବଂ ସୁସଜ୍ଜିତ ପାଟହାତୀ ଫୁଲମାଳ ଦେଇ ଅତିଥିମାନଙ୍କୁ ସ୍ୱାଗତ କରିଥିଲେ । ହଜାର ହଜାର ସଂସ୍କୃତିପ୍ରେମୀ ଦର୍ଶକଙ୍କ ଗହଣରେ ମନ୍ତ୍ରୀ, ଶ୍ରୀ ଶରତ କୁମାର କର ଏଇ ଉପଲକ୍ଷେ ଆୟୋଜିତ ଏକ ଚିତ୍ରକଳା ପ୍ରଦର୍ଶନୀ ଉଦ୍‌ଘାଟନ କରିଥିଲେ ।

ପ୍ରାରମ୍ଭରେ ପଦ୍ମକେଶରୀ ଡକ୍ଟର ଦାମୋଦର ହୋତା ଏବଂ ଛାତ୍ରଛାତ୍ରୀଙ୍କ ଦ୍ୱାରା ପରିବେଷିତ 'ସର୍ବେଷାଂ ନୋ ଜନନୀ ଭାରତ' ସଙ୍ଗୀତ ଶାସ୍ତ୍ରୀୟ ପରମ୍ପରାରେ ପରିବେଷଣ ବେଳେ ସମବେତ ଶ୍ରୋତାବୃନ୍ଦ ଦଣ୍ଡାୟମାନ ହୋଇ ସମ୍ମାନ ପ୍ରଦର୍ଶନ କରିଥିଲେ । ଉପାଧିପ୍ରାପ୍ତ ମନ୍ତ୍ରୀ, ଶ୍ରୀ ଜଗନ୍ନାଥ ମଲ୍ଲିକ ଏବଂ ସ୍ୱାମୀ ଅରୂପାନନ୍ଦ ଦାସ ମଧ୍ୟ ମଞ୍ଚାସୀନ ହୋଇ ଉଦ୍‌ବୋଧନ ଦେଇଥିଲେ । 'ଚିନ୍ତା ଓ ଚେତନା'ର କେନ୍ଦ୍ରୀୟ ସାଧାରଣ ସମ୍ପାଦକ ଶ୍ରୀ ସୁରେନ୍ଦ୍ର ଦାସ ସମବେତ ସୁଧୀବର୍ଗଙ୍କୁ ସ୍ୱାଗତ କରି 'ଚିନ୍ତା ଓ ଚେତନା'ର ଏକ ସ୍ଥାୟୀ କେନ୍ଦ୍ର କାର୍ଯ୍ୟାଳୟର ଅଭାବ ଏବଂ ସଙ୍ଗଠନର ଆଭିମୁଖ୍ୟ ଏବଂ ସାଫଲ୍ୟର ସଂକ୍ଷିପ୍ତ ସୂଚନା ଦେଇଥିଲେ ।

**ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ 'ଚିନ୍ତା ଓ ଚେତନା'ର ପୁରସ୍କାର ପ୍ରଦାନ କରାଯାଇଥିଲା :**

**ପଦ୍ମ କେଶରୀ ଉପାଧି ପ୍ରଦାନ—**

(୧) ସିଷ୍ଟର ସିଲ୍‌ଭାନିଆ (ସମାଜ ସେବା), (୨) ଶ୍ରୀ ଫଣୀଭୂଷଣ ଦାସ (ସମାଜ ସେବା), (୩) ଶ୍ରୀମତୀ ପାର୍ବତୀ ଗିରି, ଆଇ:ଏ:ଏସ୍: (ସମାଜ ସେବା), (୪) ଶ୍ରୀମତୀ ବୀଣା ଦେବୀ (ସମାଜ ସେବା, ସଙ୍ଗୀତ), (୫) ଶ୍ରୀ ହରମୋହନ ଖୁଣ୍ଟିଆ (ସଙ୍ଗୀତ), (୬) ଶ୍ରୀ ଗୋପାଳ ଚନ୍ଦ୍ର ପଣ୍ଡା (ସଙ୍ଗୀତ), (୭) ଶ୍ରୀ ପ୍ରଫୁଲ୍ଲ କୁମାର କର (ସଙ୍ଗୀତ), (୮) ଶ୍ରୀ ରାମଚନ୍ଦ୍ର ମହାନ୍ତି (ସଙ୍ଗୀତ), (୯) ଶ୍ରୀ ଅକ୍ଷୟ କୁମାର ମହାନ୍ତି (ସଙ୍ଗୀତ), (୧୦) ଡକ୍ଟର ପ୍ରତିଭା ରାୟ (ସାହିତ୍ୟ), (୧୧) ଶ୍ରୀ ରବି ସିଂ (ସାହିତ୍ୟ), (୧୨) ଶ୍ରୀ ବିଭୂତି ପଟ୍ଟନାୟକ (ସାହିତ୍ୟ), (୧୩) ଶ୍ରୀ ଜଗନ୍ନାଥ ବେହେରା (ପାଲା ଗାୟନ), (୧୪) ଶ୍ରୀ ଶିବ ପାଣିଗ୍ରାହୀ (ଗୁରୁକଳା), (୧୫) ଶ୍ରୀ ହୃଦୟନାଥ ଦାସ (ଫଟୋ ସାମ୍ବାଦିକତା), (୧୬) ଶ୍ରୀ ଶ୍ରୀହରି ନାୟକ (ନୃତ୍ୟ), (୧୭) ଶ୍ରୀମତୀ ବିଦ୍ୟୁତ୍‌ଲତା ଚୌଧୁରୀ (ନୃତ୍ୟ), (୧୮) ଶ୍ରୀ ଅରୁଣ କୁମାର ପଣ୍ଡା (ସାମ୍ବାଦିକତା), (୧୯) ଶ୍ରୀ ପ୍ରଶାନ୍ତ କୁମାର ପଟ୍ଟନାୟକ (ସାମ୍ବାଦିକତା), (୨୦) ଶ୍ରୀ କେଦାର ମହାନ୍ତି (ସାମ୍ବାଦିକତା), (୨୧) ସାମୁଏଲ୍ ସାହୁ (ଅଭିନୟ), (୨୨) ଶ୍ରୀ ବିଜୟ କୁମାର ମହାନ୍ତି (ଅଭିନୟ), (୨୩) ସ୍ୱର୍ଗତଃ ଅମିନୁଲ ଇସ୍‌ଲାମ୍ (ଜାତୀୟ ସଂହତି) ।

ମନ୍ତ୍ରୀ ଶ୍ରୀ କର କହିଲେ, ସରକାରୀ ସ୍ତରରେ ମଧ୍ୟ ଏଭଳି ବର୍ଣ୍ଣାଢ୍ୟ ତଥା ପାରମ୍ପରିକ ଉତ୍ସବ ଏତେ ଉଦ୍ଭାବନା ସହ ଅନୁଷ୍ଠିତ ହେବା ସମ୍ଭବ ନୁହେଁ । ଏଣୁ ପ୍ରଥମେ "ମହା ସମାବର୍ତ୍ତନ" ନାମଟି ଅଡୁଆ ଲାଗୁଥିଲେ ମଧ୍ୟ ଏହା ଏକ ସାର୍ଥକ ତଥା ସର୍ବାଙ୍ଗ ସୁନ୍ଦର 'ମହା ସମାବର୍ତ୍ତନ' ବୋଲି ସ୍ୱୀକାର କରିଥିଲେ । ଶ୍ରୀ କର ସମ୍ମାନିତ ତଥା ଉପାଧିପ୍ରାପ୍ତ ପ୍ରତିଭାଧରମାନଙ୍କୁ ବିଶେଷ ସମ୍ବର୍ଦ୍ଧନା ଜ୍ଞାପନ କରିବା ସଙ୍ଗେ ସଙ୍ଗେ 'ଚିନ୍ତା ଓ ଚେତନା'ର ଏଭଳି ଉଦ୍ୟମକୁ ସାଧୁବାଦ ଜଣାଇ ଉପାଧିମାନ ପ୍ରଦାନ କରିଥିଲେ ।

ସଭାପତି ଡକ୍ଟର ପାଟ୍ଟଶାଣୀ ସମ୍ବର୍ଦ୍ଧିତ କୃତୀ ସନ୍ତାନମାନଙ୍କୁ ଅଭିନନ୍ଦନ ଜ୍ଞାପନ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ସ୍ତରରେ କାର୍ଯ୍ୟରତ ପ୍ରତିଭାବାନ୍‌ଙ୍କୁ ଠାବ କରିବାରେ 'ଚିନ୍ତା ଓ ଚେତନା'ର ଅହରହ ଉଦ୍ୟମକୁ ସବୁମତେ ସମୃଦ୍ଧ କରିବା ପାଇଁ ଆହ୍ୱାନ ଦେଇଥିଲେ ।

ପ୍ରାରମ୍ଭରେ କେନ୍ଦ୍ରୀୟ ସାଧାରଣ ସମ୍ପାଦକଙ୍କ ଆହ୍ୱାନ କ୍ରମେ ସର୍ବ–ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି, କାଳିନ୍ଦୀ ଚରଣ ପାଣିଗ୍ରାହୀ, ରବି ପଟ୍ଟନାୟକ ଓ ଗୋପୀନାଥ ମହାନ୍ତିଙ୍କ ପାଇଁ ନୀରବ ପ୍ରାର୍ଥନା କରାଯାଇଥିଲା । ସଭାପତି ଡକ୍ଟର ପ୍ରସନ୍ନ ପାଟ୍ଟଶାଣୀ ସମ୍ପ୍ରତି ଅକ୍ସଫୋର୍ଡ୍ ବିଶ୍ୱବିଦ୍ୟାଳୟ ପକ୍ଷରୁ ସମଗ୍ର ବିଶ୍ୱରେ ମାତ୍ର ୪ ଜଣଙ୍କ ମଧ୍ୟରୁ 'ଶାନ୍ତିଦୂତ' ଉପାଧିରେ ଭୂଷିତ ହୋଇଥିବାରୁ ତାଙ୍କୁ ଏ ଅବସରରେ ଉଚ୍ଛସିତ ସମ୍ବର୍ଦ୍ଧନା ଦିଆଯାଇଥିଲା ।

ଏ ଅବସରରେ, ପଦ୍ମକେଶରୀ ଶ୍ରୀ ରାମଚନ୍ଦ୍ର ମହାନ୍ତି ଓ ସାଥୀ ୪୮ ଜଣ ବେହେଲା ବାଦକଙ୍କ ସହାୟତାରେ 'ବନ୍ଦେ ଉତ୍କଳ ଜନନୀ', ଶ୍ରୀ ପ୍ରଣବ ପଟ୍ଟନାୟକ, ଭଜନ, କୁମାରୀ ସ୍ନିଗ୍ଧାରାଣୀ କର, ଓଡ଼ିଶୀ, କୁମାରୀ ଅନିନ୍ଦିତା ଦାସ, ରାଗ ମହ୍ଲାର, ପଦ୍ମକେଶରୀ ବିଦ୍ୟୁତ୍ କୁମାରୀ ଚୌଧୁରୀ ଓ ସାଥୀ ସମବେତ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟ, ଭଞ୍ଜନଗର 'ଚିନ୍ତା ଓ ଚେତନା' ଶାଖାର ନାଟିକା 'ସତ୍ୟମେବ ଜୟତେ' ଏବଂ ସର୍ବଶେଷରେ ପଦ୍ମକେଶରୀ ଜଗନ୍ନାଥ ବେହେରା ପାଲା ପରିବେଷଣ କରି ହଜାର ହଜାର ଦର୍ଶକଙ୍କୁ ମୁଗ୍ଧ କରିଥିଲେ । ଶେଷରେ, ଶ୍ରୀ ଶିବାନନ୍ଦ ରାୟ ଧନ୍ୟବାଦ ଅର୍ପଣ କରିଥିଲେ ।



କଟକ ଜିଲ୍ଲା ହାତୀବାଡ଼ିଠାରେ ଅନୁଷ୍ଠିତ ଜଗନ୍ନାଥ ଚେତନା ସମ୍ମିଳନୀରେ ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଅଭିଭାଷଣ ଦେଉଛନ୍ତି (୧୬/୧୧) ।

# ଲହଡ଼ି ଯେଉଁଠି ଆଲୋକ ଛୁଏଁ

ଅଧ୍ୟାପକ ପ୍ରଫୁଲ୍ଲ କୁମାର ମହାନ୍ତି

ବିରାଟ ପୃଥିବୀ ଉପରେ ଏକ କ୍ଷୁଦ୍ର କୀଟ ପିମ୍ପୁଡ଼ିର ଅସ୍ତିତ୍ୱ ଯେତିକି ଓ ଯେପରି ମନୁଷ୍ୟର ସ୍ଥିତି ସାଗର ତୁଳନାରେ ଠିକ୍ ସେହିପରି । ଏହି ଆନୁପାତିକ ତୁଳନା ଅତହାସ୍ୟପୂର୍ଣ୍ଣ ହେଲେ ମଧ୍ୟ ଯୁକ୍ତିଯୁକ୍ତ । ତା'ର କାରଣ ପୃଥିବୀର ସମଗ୍ର ଜଳଭାଗର ପରିମାଣ ୭୧ ଶତାଂଶ ଓ ଅବଶିଷ୍ଟାଂଶ ସ୍ଥଳଭାଗ । ଏହି ସ୍ଥଳଭାଗର ଉତ୍ତର ଗୋଲାର୍ଦ୍ଧରେ ୨୫ ଶତାଂଶ ଓ ଦକ୍ଷିଣ ଗୋଲାର୍ଦ୍ଧରେ ମାତ୍ର ୪ ଶତାଂଶ ରହିଛି । ଏଥିରୁ ସ୍ପଷ୍ଟ ଅନୁମେୟ, ପୃଥିବୀର ଚତୁଃପାର୍ଶ୍ୱ କିପରି ଜଳଭାଗ ଦ୍ୱାରା ବେଷ୍ଟିତ । ଜଳଭାଗ ଓ ସ୍ଥଳଭାଗ ନିର୍ଦ୍ଦିଷ୍ଟ ଥିବା ସ୍ଥଳେ ସ୍ଥଳଭାଗସ୍ଥ ମାନବ ସଂଖ୍ୟା, ଯେତେ ନିୟନ୍ତ୍ରଣ କଲେ ବି, ବୃଦ୍ଧି ପାଉଛି, କିନ୍ତୁ ସେହି ତୁଳନାରେ ମନୁଷ୍ୟର ସମସ୍ୟାଗୁଡ଼ିକ ସମାଧାନ ହେବା ପରିବର୍ତ୍ତେ ବୃଦ୍ଧି ପାଇବାରେ ଲାଗିଛି । ତେଣୁ ବିଭିନ୍ନ ସମସ୍ୟାକୁ ଲକ୍ଷ୍ୟ ରଖି ପର୍ଯ୍ୟବେକ୍ଷଣ ମାଧ୍ୟମରେ ସିଦ୍ଧାନ୍ତ କରାଯାଉଛି ଯେ ସାଗର ହିଁ ଏକମାତ୍ର ମାଧ୍ୟମ ଯଦ୍ୱାରା ରୋଗଗୁଡ଼ିକ ଦୂର ହେବ ।

ବର୍ତ୍ତମାନ ପରିପ୍ରେକ୍ଷୀରେ ମନୁଷ୍ୟ ପାଇଁ ସଂକ୍ରାମକ ରୋଗ ରୂପେ ଦେଖାଦେଇଛି ଖାଦ୍ୟ ସମସ୍ୟା ଓ ଜାଳେଣି ବା ଶକ୍ତି ସମସ୍ୟା । ଆଶା କରାଯାଉଛି ଏହି ଦୁଇଟି ମୁଖ୍ୟ ଘଟଣାକୁ ଯେ କୌଣସି ଉପାୟରେ ସମାଧାନ କରିପାରିଲେ ଦେଶ ଅନ୍ତତଃ ସଙ୍କଟ ପରିସ୍ଥିତିର ସମ୍ମୁଖୀନ ହେବନାହିଁ । ଦେଶବାସୀମାନଙ୍କର କଷ୍ଟ ଲାଘବ ହୋଇପାରିବ । ତେଣୁ ବର୍ତ୍ତମାନ ପ୍ରଶ୍ନ ହେଉଛି ଏ ସବୁଗୁଡ଼ିକୁ କିପରି ଓ କିଏ ହଲ କରିପାରିବ ?

ପ୍ରଥମେ ଖାଦ୍ୟ ସମସ୍ୟା ସମ୍ପର୍କରେ ଆଲୋକପାତ କରାଯାଉ । ଆମ ଦେଶରେ ଭାତ ଓ ରୁଟି ଶ୍ୱେତସାର ରୂପେ, ବିଭିନ୍ନ ପ୍ରକାର ଡାଲି ପୁଷ୍ଟିସାର (proteins) ରୂପେ, ବିଭିନ୍ନ ତେଲ ଜାତୀୟ ଜିନିଷ ସ୍ନେହସାର (fat) ରୂପେ, ଶାଗ ଇତ୍ୟାଦିକୁ ଖଣିଜ ଲବଣ (minerals) ଓ ମାଂସ, କଲିଜା, ଦୁଗ୍ଧ, କଡ଼ଲିଭର୍ ତେଲ ଇତ୍ୟାଦିକୁ ଜୀବନିକା (vitamins) ରୂପେ ଖିଆଯାଏ । ମାତ୍ର ଏ ସବୁ ଖାଦ୍ୟ ମଧ୍ୟରେ ଶ୍ୱେତସାର ଜାତୀୟ ଖାଦ୍ୟର ପ୍ରାଧାନ୍ୟ ଆମ ଦେଶରେ ଅଧିକ । ପୁଷ୍ଟିସାର ଓ ସ୍ନେହସାର ପ୍ରାୟ ଦୁଷ୍ପ୍ରାପ୍ୟ, କାରଣ ଶ୍ୱେତସାର ତୁଳନାରେ ଏଗୁଡ଼ିକର ମୂଲ୍ୟ ଅତ୍ୟଧିକ । ତେବେ କଥା ହେଉଛି ଯେତେ କୃଷି ଉତ୍ପାଦନ ବୃଦ୍ଧି ପାଇଲେ ମଧ୍ୟ ଏ ସବୁ ସମସ୍ୟା ସମାଧାନ କରିବା ସମ୍ଭବ ହୋଇପାରୁନାହିଁ । ସୁତରାଂ ଅନ୍ୟ ଉପାୟ ଅବଲମ୍ବନ କରିବା ଶ୍ରେୟସ୍କର । ସେ ଦୃଷ୍ଟିରୁ ଆମର ବୈଜ୍ଞାନିକମାନେ ସାଗର ଗର୍ଭକୁ ଖନ୍‌ଭିନ୍ କରି ଦେଖୁଛନ୍ତି ଓ ଦେଖାଉଛନ୍ତି କି ପ୍ରକାର ଜିନିଷ ସବୁ ସାଗର ଯୋଗାଇ ପାରିବ । ସେଥିରେ ବର୍ତ୍ତମାନ ଆସୁଛି ଉଦ୍ଭିଦ ଜାତୀୟ ଖାଦ୍ୟ ଓ ପ୍ରାଣୀ ଜାତୀୟ ଖାଦ୍ୟ ।

## ସାମୁଦ୍ରିକ ଶୈବାଳ

ଉଦ୍ଭିଦ ମଧ୍ୟରେ ସାମୁଦ୍ରିକ ଶୈବାଳ (marine algae) ଅନ୍ତର୍ଭୁକ୍ତ । ଏ ପ୍ରକାର ଶୈବାଳକୁ ସାଧାରଣ ଭାବରେ ଶିଉଳି ବୋଲି କୁହାଯାଏ । ପୁଣି ଶିଉଳିକୁ ଏକ ଖାଦ୍ୟ କହିଲେ ହସ ଲାଗିବ, ବୋଧଗମ୍ୟ ହୋଇନପାରେ ବା ସତ୍ୟାସତ୍ୟ ନଥାଇପାରେ ବୋଲି ବି ବିଶ୍ୱାସ ହୋଇପାରେ । କିନ୍ତୁ ଏଥିରେ ସନ୍ଦେହ ନାହିଁ ଯେ ଏଗୁଡ଼ିକ ଖାଦ୍ୟାଭାବରେ ମନୁଷ୍ୟ ଖାଇପାରେ । ଏ ଶୈବାଳ ଚାରି ପ୍ରକାର — ସବୁଜ ଶୈବାଳ (green algae), ନୀଳ ସବୁଜ ଶୈବାଳ (blue-green algae), ଧୂସର ଶୈବାଳ (brown algae) ଓ ଲାଲ ଶୈବାଳ (red algae) । ଆମ ଦେଶରେ ଏ ଶୈବାଳଗୁଡ଼ିକ ଅବଶ୍ୟ କେହି ଖାଉନାହାନ୍ତି । କିନ୍ତୁ ଅନ୍ୟ ସବୁ ଦେଶ ମୁଖ୍ୟତଃ ଚୀନ୍ ଓ ଜାପାନ ଦେଶର ଲୋକମାନେ ଏ ସବୁକୁ ଅତି ଆଗ୍ରହ ସହକାରେ ସୁସ୍ୱାଦୁ ଖାଦ୍ୟ ରୂପେ ଖାଇଥାଆନ୍ତି । ଏ ଦେଶର ଲୋକମାନେ, ଅନେକ ଶୈବାଳକୁ ଆମେ ପରିବା ବ୍ୟବହାର କଲାପରି ବ୍ୟବହାର କରିଥାଆନ୍ତି (ଉଦାହରଣ ସ୍ୱରୂପ—Laminaria, Alaria, Arthrothamnus, Ulva and Sargassum) । ଅଲ୍ଭା ନାମକ ଶୈବାଳର ପତ୍ରକୁ ଉପକୂଳବର୍ତ୍ତୀ ଅଞ୍ଚଳ ଲୋକମାନେ (coastal tribes) ସାଲାଡ୍ (salad) ରୂପେ ଖାଉଥାଆନ୍ତି । ଆହୁରି ଅନେକ ଶୈବାଳ ମଧ୍ୟ (Gelidium, Corneum, Encheuma and Gracilaria) ଜେଲି, ପୁଡିଂ ଓ ଆଇସକ୍ରିମ୍ ଇତ୍ୟାଦି ପ୍ରସ୍ତୁତିରେ ଲାଗିଥାଏ । କେବଳ ଏତିକି ନୁହେଁ ଆହୁରି ଅନେକ ପ୍ରକାର ଶୈବାଳ ମଧ୍ୟ ଜାପାନୀମାନଙ୍କର ମୁଖ୍ୟ ସୁସ୍ୱାଦୁ ଖାଦ୍ୟ । ଏହି ଶୈବାଳଗୁଡ଼ିକରେ ପ୍ରଚୁର ପରିମାଣରେ ଜୀବନିକା (vitamin) ଓ ଆୟୋଡିନ୍ (iodine) ପୂରି ରହିଥିବାରୁ ଏହା ଶରୀର ପକ୍ଷେ ଉପକାରୀ । ଏହା ବ୍ୟତୀତ ସୁବାସିତ ଦ୍ରବ୍ୟ (cosmetics), ଜୋତା ପଲିସ୍, ଟାଇପ୍ ମେସିନ୍‌ର ରୋଲର୍, କ୍ରିମ୍ ବଲ୍ ଓ ଔଷଧ ଇତ୍ୟାଦି ପ୍ରସ୍ତୁତ କରିବାରେ ଏମାନଙ୍କର

ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କୃଷି କ୍ଷେତ୍ରରେ ଜୈବସାର (Bio fertilizer) ଭାବରେ କେତେକ ଶୈବାଳ (Nostoc, Rivularia, Arabaena and Gleocapsa) କାର୍ଯ୍ୟ କରିଥାଆନ୍ତି । ଏଗୁଡ଼ିକ ବାୟୁମଣ୍ଡଳରୁ ଯବକ୍ଷାରଜାନ ଆଣି ମାଟିରେ ବା ଜଳ ମଧ୍ୟରେ ସଞ୍ଚିତ କରୁଥିବାରୁ ଏମାନଙ୍କୁ ଯବକ୍ଷାରଜାନ ସଞ୍ଚୟ ଶୈବାଳ (Nitrogen fixing algae) କୁହାଯାଏ ।

## ସାମୁଦ୍ରିକ ପ୍ରାଣୀରୁ ଖାଦ୍ୟ ପ୍ରସ୍ତୁତି

ତା'ପରେ ସମୁଦ୍ରର ପ୍ରାଣୀ ପ୍ରସଙ୍ଗ । ଏମାନେ ତ ଅନେକ ପ୍ରକାରର । ସାଗର ଗର୍ଭ ଏମାନଙ୍କୁ ଦେଇଛି ବିସ୍ତୀର୍ଣ୍ଣ କ୍ରୀଡ଼ାଭୂମି । ମାତ୍ର ମନୁଷ୍ୟ ଜୀବନ ପାଇଁ ହେଉଛନ୍ତି ଏମାନେ ଜୀବନ ରକ୍ଷକ । ଏମାନେ ହେଲେ ବିଭିନ୍ନ ପ୍ରକାର ଖାଦ୍ୟ ଯୋଗ୍ୟ (edible) ମତ୍ସ୍ୟ, କଇଁଚ, ଗେଣ୍ଡା ଶାମୁକା (molluses), ଚିଙ୍ଗୁଡ଼ି ଓ କଙ୍କଡ଼ା ଇତ୍ୟାଦି । ଏଥି ମଧ୍ୟରୁ ଆମର ଖାଦ୍ୟ ହେଲା ନିର୍ଦ୍ଦିଷ୍ଟ ଶ୍ରେଣୀର କେତେକ ମତ୍ସ୍ୟ ଏବଂ ଅନ୍ୟଗୁଡ଼ିକ ଅଖାଦ୍ୟ । କିନ୍ତୁ କହିଲେ ଆଶ୍ଚର୍ଯ୍ୟ ଲାଗିବ ଯେ ଜାପାନୀମାନଙ୍କର ଗେଣ୍ଡା ଶାମୁକା (ସେପିଆ, ଲୋଲିଗୋ, ଅକ୍ଟୋପସ୍ ଇତ୍ୟାଦି) ଅତି ପ୍ରିୟ ଖାଦ୍ୟ ।

ଜାପାନ ଗୋଟିଏ ଛୋଟ ଦେଶ । ହନ୍‌ସ, ହୋକାଇଡ଼ୋ, ସିକୋକୁ ଓ କିଉସିଉ ନାମକ କେତେଗୁଡ଼ିଏ ଦ୍ୱୀପପୁଞ୍ଜକୁ ନେଇ ଏହା ଗଠିତ । ଅଭାବ ରହିଛି ସ୍ଥାବର ଭୂମି ବା କୃଷି କ୍ଷେତ୍ରର । ତେଣୁ ସାମୁଦ୍ରିକ ସମ୍ପଦକୁ ପୂର୍ଣ୍ଣ ଭାବରେ ବିନିଯୋଗ କରୁଛି ଜାପାନ ଓ ଆଉ କେତେକ ଦେଶ । ଖାଦ୍ୟ ବ୍ୟତୀତ ଅନ୍ୟ ଅନେକ ଉପାୟରେ ମଧ୍ୟ ସେଗୁଡ଼ିକୁ ଉପଯୋଗ କରିଛି, କରୁଛି ଓ କରିବା ପାଇଁ ମଧ୍ୟ ଚେଷ୍ଟା ଚଳାଇଛି । ସେମାନେ ଏପରି ସବୁ ପ୍ରାଣୀ ଓ ଉଦ୍ଭିଦକୁ ବୈଜ୍ଞାନିକ ପଦ୍ଧତିରେ ପୁଡ଼ିଆ ଖାଦ୍ୟ (packet food) ରୂପେ ବଜାରରେ ବିକ୍ରୟ କରୁଛନ୍ତି । ସେଗୁଡ଼ିକୁ ଖାଲି ଗରମ ପାଣିରେ ପକାଇ ସେମାନେ ଖାଦ୍ୟ ରୂପେ ଖାଇଥାଆନ୍ତି । ଏହା ମଧ୍ୟ ସେମାନଙ୍କର ଖାଦ୍ୟ ପ୍ରଣାଳୀର ଅନ୍ତର୍ଭୁକ୍ତ । ତେଣୁ ଏକାଧାରରେ ସେମାନେ ସମୟ ବଞ୍ଚାଇବା ସଙ୍ଗେ ସଙ୍ଗେ ଅନେକ ଜିନିଷକୁ ବିଭିନ୍ନ ଉପାୟରେ ବ୍ୟବହାର କରି ନିଜକୁ ଦକ୍ଷ ପ୍ରମାଣ କରାଇ ପାରୁଛନ୍ତି ।

## ସାମୁଦ୍ରିକ ଶକ୍ତିର ବିନିଯୋଗ

ଶେଷରେ, ଶକ୍ତି । ସାଗର ମୁଖ୍ୟତଃ ସୂର୍ଯ୍ୟଠାରୁ ତାପଶକ୍ତି ବିକୀରଣ ଭାବରେ (rediant energy) ପାଉଛି । ସେହି ଶକ୍ତି ବିଭିନ୍ନ ଉପାୟରେ ଶକ୍ତିର ସାଧାରଣ ନିୟମାନୁସାରେ ଏକ ପ୍ରକାରରୁ ଅନ୍ୟ ପ୍ରକାରକୁ ରୂପାନ୍ତରିତ (transfermation) ହୋଇପାରୁଛି । ତେଣୁ ବର୍ତ୍ତମାନ ଏହି radiant energyକୁ କିପରି ବ୍ୟବହାର କରାଯିବ ସେଥିପାଇଁ ବୈଜ୍ଞାନିକମାନେ ଆପ୍ରାଣ ଚେଷ୍ଟିତ । ଦ୍ୱିତୀୟତଃ, ପେଟ୍ରୋଲିୟମ୍ ଖନନ ସାଗର ଗର୍ଭରେ ସୁଗମ୍ୟ ରୂପେ ଚାଲିପାରିଛି । ତୃତୀୟତଃ ଜୁଆର ଶକ୍ତି (tidal force)କୁ ଏବେ ଆମେରିକାର ବୈଜ୍ଞାନିକମାନେ କିପରି କାର୍ଯ୍ୟରେ ଲଗାଇ ପାରିବେ, ସେଥିପାଇଁ ପରୀକ୍ଷା ଚଳାଇଛନ୍ତି । ଆଉ ଉପକୂଳସ୍ଥ ବାୟୁ ଶକ୍ତିକୁ ବିନିଯୋଗ କରିବାରେ ପୂର୍ଣ୍ଣ ସଫଳତା ଆମ ଦେଶରେ ମଧ୍ୟ ଆସିପାରିଛି । ବଡ଼ ଖୁସିର ବିଷୟ, ଆମ ଦେଶରେ ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକରେ ପବନରୁ କିପରି ଶକ୍ତି ସଂଗ୍ରହ କରାଯାଇ ପାରିବ, ସେଥିପାଇଁ ପୁରୀରେ ବାୟୁ ଚାଳିତ ମେସିନ୍ ସବୁ ସ୍ଥାପନ କରାଯାଇଛି । ସାମୁଦ୍ରିକ ଶକ୍ତିକୁ ବିଭିନ୍ନ ଉପାୟରେ ଲଗାଇବା ପାଇଁ ଯେଉଁ ଆପ୍ରାଣ ଗବେଷଣା, ପ୍ରଚେଷ୍ଟା ଓ କର୍ମ ତତ୍ପରତା ଅବ୍ୟାହତ ରହିଛି, କିଛି ବର୍ଷ ମଧ୍ୟରେ ସେ ସବୁର ସଫଳ ରୂପାୟନ ସମ୍ଭବ ହେବ ।

ଉଲ୍ଲେଖଯୋଗ୍ୟ ଘଟଣା ହେଲା, ଅନେକ ଛୋଟ ଛୋଟ ଜିନିଷକୁ କିପରି ବହୁଳ ଭାବରେ ବ୍ୟବହାର କରାଯାଇ ପାରିବ ତାହା ପାଶ୍ଚାତ୍ୟ ଦେଶର ଲୋକମାନେ ପ୍ରମାଣ କରିଦେଇଛନ୍ତି । ଆମେ ଯଦି ତାହାକୁ ବ୍ୟବହାର କରିପାରନ୍ତେ, ତେବେ ଆମର ଅନେକ ଅଭାବ ଓ କଷ୍ଟ ଲାଘବ ହୋଇପାରନ୍ତା । ଜାପାନୀମାନେ ସମୁଦ୍ର ଖାଦ୍ୟ ପାଇଁ ଏତେ ଆଗ୍ରହୀ ଯେ ସେମାନେ ବର୍ତ୍ତମାନ କୃତ୍ରିମ ଭାବରେ ଶମ୍ବୁକ ପ୍ରାଣୀ ଓ ଚିଙ୍ଗୁଡ଼ି ବୃଦ୍ଧି କରିବାରେ ଲାଗିଛନ୍ତି । କେବଳ ସେତିକି ନୁହେଁ ଶମ୍ବୁକ ପ୍ରାଣୀମାନଙ୍କୁ ନେଇ କୃତ୍ରିମ ମୁକ୍ତା (artificial pearl) ଉତ୍ପାଦନ କରି ଜାପାନୀମାନେ ଅନେକ ଅର୍ଥ ଉପାର୍ଜନ କରିପାରିଛନ୍ତି ।

ଆମ ସରକାର ଏ ସବୁ ଖାଦ୍ୟ ଓ ଶକ୍ତି ସଂଗ୍ରହ ପ୍ରୟତ୍ନରେ କୃତକାର୍ଯ୍ୟ କରାଇପାରିଲେ ସମସ୍ୟାଗୁଡ଼ିକର ନିଶ୍ଚୟ ସମାଧାନ ହୋଇଯିବ । କେତେକ ମାତ୍ରାରେ ତ ହୋଇଗଲାଣି । ଏ ସବୁର ପୂର୍ଣ୍ଣ ବିନିଯୋଗ ଆଉ କିଛି ବର୍ଷ ମଧ୍ୟରେ ହୋଇପାରିବ । ସେତେବେଳେ ସାଗର ହେବ ମନୁଷ୍ୟ ପାଇଁ ପ୍ରକୃତିର ଗନ୍ତାଘର । ଜୀବନ ପାଇଁ ଆଲୋକ ଓ ମାନବ ସମାଜ ପାଇଁ ହେବ ଭାସ୍ୱର ଭବିଷ୍ୟତ ।

ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର-୭୫୧ ୦୦୪ ।

# କନ୍ୟା ରତ୍ନ

ଡକ୍ଟର ଚିନ୍ତାମଣି ମିଶ୍ର

ଝିଅଟି ହେଲା ଗୃହର ଲକ୍ଷ୍ମୀ। କୁଳର ଲକ୍ଷ୍ମୀ ବା ହିତକାରୀ ବୋଲି ଅନେକ 'ଦୁହିତା' କହିଥାଆନ୍ତି। ଝିଏଟିଏ ଜନ୍ମହେଲେ କେତେ ବାପାମାଆ ଖୁସିରେ କହିଥାଆନ୍ତି। "କନ୍ୟା ରତ୍ନଟିଏ ପାଇଛୁ। ବାଲ୍ୟକାଳରେ ଧୂଳିଖେଳ, ପୁଚିଖେଳ, ଧାଆଁ ଦଉଡ଼କୁ ଦେଖିଲେ ମନେହୁଏ ସତେ ଯେପରି ପ୍ରଜାପତିଟିଏ ଏ ଫୁଲରୁ ସେ ଫୁଲକୁ ଉଡ଼ି ବୁଲୁଛି। କିନ୍ତୁ ଝିଅ ଜନମକୁ ଏକ ଅଭିଶପ୍ତ ଜୀବନ ବୋଲି କେହି କେହି ଭାବିଥାନ୍ତି। ଝିଅକୁ ଜନ୍ମ ଦେଇଥିବା ମାଆ ଜଣେ ଶ୍ରୀହୀନ, କୁଳର କାଳିମା ବୋଲି କେହି କେହି କ୍ରୋଧ ଦେଖାଇଥାନ୍ତି ବା ଅଭିଶାପ ଦେଇ ଥାଆନ୍ତି। କିନ୍ତୁ, ଏସବୁ କାହିଁକି ହୁଏ ? ସତରେ କ'ଣ ଝିଅଟି ଅଭିଶପ୍ତ ନା ଆଶୀର୍ବାଦ ?

ଶିଶୁଟି ମାଆ ପେଟରେ ଗର୍ଭସ୍ଥ ହେଲା ବେଳେ ତାହା ଝିଅ ହେବ କି ପୁଅ ହେବ କହି ହୁଏନାହିଁ। ସେଥିପାଇଁ ତାକୁ ପ୍ରାକୃତିକ ଅବଦାନ ବା ଈଶ୍ୱରଙ୍କର ଆଶୀର୍ବାଦ କହିଲେ ଅତ୍ୟୁକ୍ତି ହେବନାହିଁ। ଅବଶ୍ୟ ଗର୍ଭସ୍ଥ ହୋଇସାରିବାର କିଛି ଦିନ ପରେ ତାହା ପୁଅ ହେବ କି ଝିଅ ହେବ ତାକୁ ପରୀକ୍ଷା ନିରୀକ୍ଷା କରି କହି ପାରିବେ ବୋଲି ଡାକ୍ତର, ବୈଜ୍ଞାନିକମାନେ ଆଶା ପୋଷଣ କରିଛନ୍ତି।

ଜୀବ ରସାୟନବିତ୍, ଶରୀରତତ୍ତ୍ୱବିତ୍ ଓ ଅନ୍ୟାନ୍ୟ ବୈଜ୍ଞାନିକଙ୍କ ମତରେ ଗର୍ଭସ୍ଥ ଶିଶୁ ବା ଡିମ୍ବାଣୁ ବାପା ଓ ମାଆଙ୍କ ମିଳିତ ରକ୍ତରୁ ଉତ୍ପତ୍ତି ହୋଇ ଥାଆନ୍ତି। ଅବଶ୍ୟ ସେ ରକ୍ତ ବିଶୋଧିତ। ତେଣୁ ତାକୁ କ୍ରୋମୋଜମ କୁହାଯାଇଥାଏ। ସାଧାରଣତଃ ମାଆର ରକ୍ତରୁ ଏବଂ ସେ ଦୃଷ୍ଟିରୁ ପ୍ରତ୍ୟେକ ନାରୀର ରକ୍ତରୁ ଗୋଟିଏ ପ୍ରକାର କ୍ରୋମୋଜମ ବାହାରେ। ତା'ର ନାମ ଏକ୍ସ (X) କ୍ରୋମୋଜମ। କିନ୍ତୁ ବାପାର ରକ୍ତରୁ ପ୍ରତ୍ୟେକ ପୁରୁଷ ରକ୍ତରୁ ଦୁଇ ପ୍ରକାର କ୍ରୋମୋଜମ ବାହାରେ ଯାହାକୁ ଏକ୍ସ (X) ଓ ୱାଇ (Y) କ୍ରୋମୋଜମ ବୋଲି କୁହାଯାଏ। ଯଦି ଦୈବାତ୍ X ଓ Y ର ମିଳନରେ ଗର୍ଭ ସଞ୍ଚାର ହୁଏ ତେବେ ଗର୍ଭସ୍ଥ ଶିଶୁଟି ପୁଅ ହୁଏ। କିନ୍ତୁ ଯଦି X ଓ X ର ମିଳନ ବା XX (କେବଳ ଏକ୍ସ) ହୁଏ ତେବେ ତାହା ସୁନିଶ୍ଚିତ ଭାବେ ଝିଅ ହୁଏ।

ଜନ୍ମ ପରେ ପରେ କେବଳ ଲିଙ୍ଗ ତାରତମ୍ୟ ବ୍ୟତୀତ ଝିଅ, ପୁଅ ଭିତରେ ବିଶେଷ କିଛି ଫରକ ଦେଖାଯାଏ ନାହିଁ। ଖାଦ୍ୟ, ପାନୀୟ, ଶରୀର ଗଠନ, ହାଡ଼, ଦାନ୍ତ, ଇତ୍ୟାଦି ସବୁ ସମାନ। ଅବଶ୍ୟ ମାନସିକ ସ୍ତରରେ କିଛି କିଛି ଫରକ ଥାଏ। ଏ ବିଷୟରେ ପୃଥିବୀ ବିଖ୍ୟାତ ମନସ୍ତାତ୍ତ୍ୱିକ ସିଗ୍‌ମଣ୍ଡ ଫ୍ରଏଡ଼ଙ୍କର ଗୋଟିଏ କଥା ମନେପଡ଼େ। ସେ କହିଥିଲେ ଜନ୍ମ ହେବାର ପ୍ରାୟ ୫।୬ ମାସ ବେଳକୁ ଝିଅଟିର ବାପା ପ୍ରତି ଏକ ପ୍ରକାର ସ୍ୱତନ୍ତ୍ର ଆକର୍ଷଣ ଥାଏ। ବାପାଙ୍କ କୋଳରେ ବସିବା, ଗେଲେଇ ହେବା ଆଦି ତା'ର ବ୍ୟବହାରର ଅନ୍ତର୍ଭୁକ୍ତ। ସେ ଯେତେବେଳେ ମାଆକୁ ବାପାଙ୍କ ସହିତ କଥାବାର୍ତ୍ତା ହେବା ପାଇଁ ମଧ୍ୟ ସୁଯୋଗ ଦିଏନାହିଁ। ଠିକ୍ ସେହିପରି ପୁଅ ପିଲାଟିର ମାଆ ପ୍ରତି ଅତ୍ୟଧିକ ମମତା ଥାଏ। ମାଆ ସହିତ ତା'ର ସମ୍ପର୍କ ଭିତରେ ବାପାଙ୍କୁ ସ୍ଥାନ ଦିଏନାହିଁ। ଏଭଳି ସମ୍ପର୍କକୁ "ଓଡ଼ିପସ୍ କମ୍ପ୍ଲେକ୍ସ" ବୋଲି ଫ୍ରଏଡ଼୍ କହିଥିଲେ। ଗ୍ରୀକ୍ ସାହିତ୍ୟର ଓଡ଼ିପସ୍ ଚରିତ୍ରକୁ ଅବତାରଣା କରି ସେ ଏପରି ଏକ ମତାମତ ଦେଇଥିଲେ। ଗପଟି ହେଲା–ରାଜା ଓଡ଼ିପସ୍ ନିଜ ଅଜାଣତରେ ମାଆକୁ ବିବାହ କରିଥିଲେ। କିନ୍ତୁ ତାହା ପରେ ଜାଣି ପାରିବାରୁ ସେ ଆତ୍ମହତ୍ୟା କଲେ। ଶୈଶବରେ ଏପରି ମନୋଭାବ ଉଭୟ ପୁଅ ଓ ଝିଅମାନଙ୍କର ଥାଏ। କିନ୍ତୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ସାମାଜିକ ଓ ପରିବେଶଗତ ପ୍ରଭାବରୁ ତାହା ଦୂର ହୋଇଯାଏ।

ବୟସ ବଢ଼ିବାରୁ ପାଠପଢ଼ା ଆରମ୍ଭ ହୁଏ। ଗୁହାଳୀ, ଚାଟଶାଳୀ, ନର୍ସରୀ,କିଣ୍ଡରଗାର୍ଟେନ୍ ଆଦିରେ ପାଠପଢ଼ା ଆରମ୍ଭ ହେବା ଦିନଠାରୁ ସ୍କୁଲପାଠ ଶେଷ ହେବା ପର୍ଯ୍ୟନ୍ତ ଯେଉଁ ବୟସ ତାକୁ "ସ୍କୁଲ–ବୟସ" ବୋଲି କୁହାଯାଏ। ଏହା ପ୍ରାୟ ୩।୪ ବର୍ଷରୁ ଆରମ୍ଭ ହୋଇ ୧୫।୧୬ ବର୍ଷ ବୟସ ପର୍ଯ୍ୟନ୍ତ ରହେ।ଜୀବନର ଏଭଳି ଏକ ଅଂଶ ଝିଅମାନଙ୍କ ପାଇଁ ଘଟଣାବହୁଳ। କାରଣ ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ସେମାନଙ୍କର ଶାରୀରିକ ଓ ମାନସିକ ପରିବର୍ତ୍ତନ ହୋଇଥାଏ। ଖେଳଘର ଛାଡ଼ି ଘର ସଂସାର କରିବାର ପ୍ରସ୍ତୁତି ଏହି ସମୟରୁ ହିଁ ଆରମ୍ଭ ହୁଏ।

ଝିଅମାନଙ୍କର ପୋଷାକ, ପରିଚ୍ଛଦ ପୁଅମାନଙ୍କ ଠାରୁ ଫରକ। ସ୍କୁଲ ୟୁନିଫର୍ମକୁ ଛାଡ଼ିଦେଲେ ଅନ୍ୟ ସମୟରେ ଝିଅମାନେ ସୁନ୍ଦର ସୁନ୍ଦର ଫ୍ରକ ଓ ଅନ୍ୟାନ୍ୟ ପୋଷାକ ପିନ୍ଧନ୍ତି। ମୁଣ୍ଡରେ ଲମ୍ବା ଲମ୍ବା

ଖାଳଗଣ୍ଡି ସେଥିରେ ଫୁଲ ଖୋଷନ୍ତି । କିନ୍ତୁ ପୁଅମାନଙ୍କର ପୋଷାକପତ୍ର ଖୁବ୍ ସାଦା ସିଧା, ମୁଣ୍ଡରବାଳ ଛୋଟ ଛୋଟ ହୋଇଥାଏ ।

ଶିକ୍ଷା କ୍ଷେତ୍ରରେ ଝିଅ, ପୁଅମାନଙ୍କ ଭିତରେ ଥିବା ତାରତମ୍ୟ ପ୍ରଣିଧାନଯୋଗ୍ୟ । ପ୍ରାଥମିକ ଶିକ୍ଷା ସ୍ତରରେ ଝିଅମାନେ ପୁଅମାନଙ୍କ ଅପେକ୍ଷା ସାଧାରଣତଃ ଭଲ କରିଥାନ୍ତି । ପରୀକ୍ଷାରେ ଭଲ ନମ୍ବର ରଖନ୍ତି । କ୍ଲାସ୍‌କୁ ଆସିଲାବେଳେ ପଢ଼ିକରି ଆସିଥାନ୍ତି ଯା ଫଳରେ ଶିକ୍ଷକ ପ୍ରଶ୍ନ ପଚାରିଲେ ଉତ୍ତର ଦିଅନ୍ତି । କୌଣସି ଏକ ପ୍ରଶ୍ନ ପଚାରିଲେ ବାଳକମାନେ ଯେପରି କଅଣ ? କାହିଁକି ? କିପରି ? ଆଦି କହି ଶିକ୍ଷକଙ୍କୁ ବ୍ୟତିବ୍ୟସ୍ତ କରି ଦିଅନ୍ତି, ଝିଅମାନେ ସେପରି କରନ୍ତିନାହିଁ । ବରଂ ଝିଅମାନେ ଯଦି ଉତ୍ତର ଜାଣିଥାନ୍ତି କହି ଦିଅନ୍ତି ନଚେତ୍ କେଉଁଟା ଠିକ୍ ଉତ୍ତର ହେବ ତାହା କହିବାକୁ ଶିକ୍ଷକ ବା ଶିକ୍ଷୟିତ୍ରୀଙ୍କୁ ଅନୁରୋଧ କରି ନିଜର ସାମାଜିକତା ଦେଖାଇଥାଆନ୍ତି । ସାଧାରଣଶିକ୍ଷା ବ୍ୟତୀତ ସଙ୍ଗୀତ ଓ ନୃତ୍ୟ ଶିକ୍ଷାକରିବା ଝିଅମାନଙ୍କ ପାଇଁ ଯେପରି ସହଜ ସେହିପରି ଆନନ୍ଦଦାୟକ ମଧ୍ୟ । ଉଚ୍ଚ ଶ୍ରେଣୀରେ ପଢ଼ିବାବେଳେ ଝିଅମାନେ ସାଧାରଣତଃ ସମାଜ ବିଜ୍ଞାନ, କଳା, ଚିତ୍ରକଳା, ସଙ୍ଗୀତ, ନୃତ୍ୟ ଆଦି ବିଷୟମାନ ନେଇ ପଢ଼ିଥାନ୍ତି । କିନ୍ତୁ ପୁଅମାନେ ବିଜ୍ଞାନ, ଗଣିତ, ପରିସଂଖ୍ୟାନ, ଆଦି ବିଷୟ ପଢ଼ିଥାଆନ୍ତି । ଅବଶ୍ୟ ଝିଅମାନେ ଯେ ଡାକ୍ତର, ଇଞ୍ଜିନିୟର, ଗବେଷିକା ଆଦି ହେଉନାହାନ୍ତି, ତା ନୁହେଁ କିନ୍ତୁ ପୁଅମାନଙ୍କ ଅନୁପାତରେ କମ୍ ।

ଖେଳ ସମସ୍ତଙ୍କର ମନ ଖୁସି କରିଦିଏ । ବାଳିକାମାନେ କେତେ ପ୍ରକାର ଖେଳ ଖେଳି ମନଖୁସି କରୁଥିବାବେଳେ ବାଳକମାନେ ଅନ୍ୟକେତେ ପ୍ରକାର ଖେଳ ଖେଳନ୍ତି । ସାଧାରଣତଃ ନାରୀ ସୁଲଭ ଖେଳକୁ ବାଳିକାମାନେ ପସନ୍ଦ କରିଥାଆନ୍ତି ଅବଶ୍ୟ ଖୁବ୍ ଛୋଟ ଅବସ୍ଥାରେ ବାଳକ ବାଳିକାଙ୍କ ଖେଳରେ ବିଶେଷ କିଛି ତାରତମ୍ୟ ନଥାଏ । କିନ୍ତୁ ସେମାନେ ଟିକିଏ ବଡ଼ ହୋଇଗଲେ ଏବଂ ସ୍କୁଲ ଯିବାର ବୟସ ହେଲେ ନିଜ ବୟସ ଓ ସମଲିଙ୍ଗୀ ସାଙ୍ଗ ସାଥୀଙ୍କ ସହିତ ମିଶି ଖେଳିବାକୁ ଅଧିକ ପସନ୍ଦ କରନ୍ତି । ବାଳିକାମାନେ ଖେଳୁଥିବା କେତେକ ସାଧାରଣ ଖେଳ ହେଲା – କଣ୍ଢେଇ ବାହାଘର, ପୁଚି..ଲୁଚକାଳି, ଦଉଡ଼ି ଡିଆଁ, ରୋଷେଇ କରି ଭୋଜିଭାତ କରି ଖାଇବା, ସୂଚିସୂତା ଦୌଡ଼ ଆଦି ପ୍ରଧାନ ।

ଭାଷା ବିକାଶ କ୍ଷେତ୍ରରେ ଝିଅମାନଙ୍କର ସ୍ୱତନ୍ତ୍ର ସ୍ଥାନ ଅଛି । ପୁଅମାନଙ୍କ ଅପେକ୍ଷା ଝିଅମାନେ ସାଧାରଣତଃ କମ୍ ବୟସରୁ କଥା କହିବା ଆରମ୍ଭ କରିଥାନ୍ତି । ଶିଶୁର ମୁହଁରୁ ଯେତେବେଳେ ବା, ଡା, ମା, ମା, ଇତ୍ୟାଦି ଅବୁଝା ଭାଷା ବାହାରେ ତାହା ପ୍ରଥମେ ଝିଅ ପିଲାଙ୍କ ମୁହଁରୁ ବାହାରିଥାଏ । ବୟସ ବଢ଼ିଲେ ମଧ୍ୟ ଝିଅମାନେ ସାଧାରଣତଃ ପୁଅମାନଙ୍କ ଅପେକ୍ଷା ଅଧିକ କଥାବାର୍ତ୍ତା କରିଥାନ୍ତି । ଅବଶ୍ୟ ସାମାଜିକ ଶୃଙ୍ଖଳ ଓ ପାରିବାରିକ ବାରଣ ସେମାନଙ୍କୁ ଅଧିକ କଥାବାର୍ତ୍ତା କରିବାର ସୁଯୋଗ ଦିଏନାହିଁ । କିନ୍ତୁ ଯେଉଁଠାରେ ସେପରି ପ୍ରତିବନ୍ଧକ ନାହିଁ ଓ ଯେଉଁ ପରିବାରରେ ମାଆମାନେ ଅଧିକ ଗପୁଡ଼ି ସେମାନଙ୍କର ଝିଅମାନେ ମଧ୍ୟ ଅଧିକ କଥାବାର୍ତ୍ତା କରିଥାଆନ୍ତି । ଏକଥା କେତେକ ମନୋବୈଜ୍ଞାନିକ ପରୀକ୍ଷାରୁ ଜଣାପଡ଼ିଛି ।

ହସ, କାନ୍ଦ, ମାନ ଅଭିମାନ ଅର୍ଥାତ୍ ଭାବ ପ୍ରବଣତା ଝିଅମାନଙ୍କ ପାଇଁ ଅତି ସାଧାରଣ କଥା । ଟିକିଏ କଥାରେ ହସି ହସି ଗଡ଼ିଯିବେ ଓ ଆଉ ଟିକିଏ କଥାରେ କାନ୍ଦି କାନ୍ଦି ନୟନ୍ତ ହୋଇଯାଆନ୍ତି । ରାଗ, ରୁଷା, ମାନ ଅଭିମାନ କେବଳ ଝିଅମାନଙ୍କ ପାଖରେ ସମ୍ଭବ ହୋଇଥାଏ । କିନ୍ତୁ ଅଧିକାଂଶ ବାଳକ ସାଧାରଣତଃ ଗମ୍ଭୀର, ଅଳ୍ପଭାଷୀ ଏବଂ କ୍ରୋଧୀ । ପୁଅ ପିଲାଟିଏ ଯଦି ସାମାନ୍ୟ କଥାରେ କାନ୍ଦେ ତାକୁ "ମାଇଚିଆ" ବା ନୁରୁବିଆ ବୋଲି କହିଥାଆନ୍ତି । କିନ୍ତୁ ଝିଅମାନଙ୍କ ପାଇଁ ସେପରି ସାମାଜିକ ତାଗିଦ୍ କିଛି ନାହିଁ । ସତେ ଯେପରି କାନ୍ଦିବା ଝିଅମାନଙ୍କର ଧର୍ମ ।

ଝିଅମାନଙ୍କ ପାଇଁ ସାମାଜିକ ତାଗିଦ ଭିନ୍ନ ଧରଣର । କେବଳ ଆମ ଦେଶରେ ନୁହେଁ, ପୃଥିବୀର ଅନ୍ୟ ଦେଶମାନଙ୍କରେ ମଧ୍ୟ ଝିଅମାନଙ୍କ ପାଇଁ ଅନେକ ସାମାଜିକ କଟକଣା ଅଛି । ଝିଅମାନେ କେତେସମୟ କଥାବାର୍ତ୍ତା କରିବେ, କାହା ସହିତ କଥା କହିବେ, କିପରି ହସିବେ, କିପରି ଖାଇବେ, ପୋଷାକପତ୍ରର କିପରି ଯତ୍ନ ନେବେ ଇତ୍ୟାଦି ଅନେକ ଚଳଣି ସେମାନଙ୍କପାଇଁ ଲାଗୁ କରାଯାଇଥାଏ । ଏଥିପାଇଁ ପରିବାର ଭିତରେ ବାପାମାଆ, ଓ ବିଦ୍ୟାଳୟରେ ଶିକ୍ଷକ ଶିକ୍ଷୟିତ୍ରୀ ପ୍ରଧାନତଃ ଦାୟୀ । ଅବଶ୍ୟ ପୁଅ ଝିଅଙ୍କର ଚରିତ୍ର ଗଠନ କରି ସେମାନଙ୍କୁ ଉପଯୁକ୍ତ ମଣିଷ ଭାବରେ ସମାଜ ଉପଯୋଗୀକରିବା ସେମାନଙ୍କର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ । କିନ୍ତୁ ଅଧିକ କଟକଣା ଦ୍ୱାରା ଝିଅମାନଙ୍କ ନିକଟରେ ଥିବା ବୌଦ୍ଧିକ ସାମର୍ଥ୍ୟ ଉପଯୁକ୍ତ ବିକାଶ ଲାଭ କରିପାରେ ନାହିଁ ।

ବ୍ୟକ୍ତିତ୍ୱ ଗଠନ କଥା ଦେଖାଯାଉ । ପିଲାଟି ଦିନରୁ ଖାଦ୍ୟ, ପାନୀୟ ଯୋଗାଇ ବାପମାଆ ପିଲାମାନଙ୍କୁ ମଣିଷ କରନ୍ତି । ଶିକ୍ଷକ ଶିକ୍ଷୟିତ୍ରୀ ଶିକ୍ଷାଦାନ କରନ୍ତି । ସେହି ଅବସ୍ଥାରୁ ଝିଅଟି କ'ଣ ହେବା ଉଚିତ ତାହା ବିଚାର କରି ଯତ୍ନ ନିଆଯିବା ଦରକାର । ସାଧାରଣତଃ ଝିଅଟି ମାଆକୁ ତା'ର ଆଦର୍ଶ ବୋଲି ଭାବିଥାଏ । ବଡ଼ ହେଲେ ସେ ସେହିଭଳି ହେବ, ଏ କଥା ତା ମନ ଭିତରେ ଥାଏ । ଅବଶ୍ୟ ମାଆଭଳି ମାଉସୀ, ପିଉସି, ଖୁଡ଼ି, ମାଇଁ, ବଡ଼ ଭଉଣୀ ଆଦି ପରିବାର ଭିତରର ନାରୀ ଏବଂ ପରିବାର ବାହାରେ ରାଣୀ, ସାମ୍ରାଜ୍ଞୀ, ନେତ୍ରୀ, ଶିକ୍ଷୟିତ୍ରୀ ଆଦିଙ୍କୁ ସେ ଆଦର୍ଶ ସ୍ଥାନୀୟା ବୋଲି ଭାବିଥାଏ । ଶାରୀରିକ ଗଠନ ଦୃଷ୍ଟିରୁ ତାର ଭାବନା ଯଥାର୍ଥ । କିନ୍ତୁ ମାନସିକ ଦୃଷ୍ଟି କୋଣରୁ ତାହାର ଭାବନାରେ ପରିବର୍ତ୍ତନ ଆସିପାରେ ।

ଝିଅର ଜନ୍ମ ଓ ଲାଳନ ପାଳନ ପଛରେ ଅନେକ ଅନ୍ଧବିଶ୍ୱାସ ରହିଯାଇଛି । ଝିଅଟି ଦେରୀ ହେଲେ ଶ୍ରୀମତ୍ ବା ଲକ୍ଷ୍ମୀବନ୍ତ ବୋଲି କୁହାଯାଏ । ଅମାବାସ୍ୟାରେ ଜନ୍ମହେଲେ "ଉଆଁସୀ କନ୍ୟା" କହି ହତାଦାର ଓ ଅବମାନନା କରାଯାଇଥାଏ । କେବଳ ଆମ ଦେଶରେ ନୁହେଁ ଚୀନ୍, ଜାପାନ, ରୁଷିଆ, ଗ୍ରୀସ୍, ଇଂଲଣ୍ଡ ଆଦି ଦେଶରେ ଝିଅ ଜନ୍ମକୁ ନେଇ ଅନେକ କୁ ପ୍ରଥା ପ୍ରଚଳିତ ଅଛି । ଦିନ, ବାର, ରାଶି, ନକ୍ଷତ୍ର, ମାସ, ଋତୁ ଇତ୍ୟାଦିକୁ ନେଇ

ଲୋକ କଥାମାନ ପ୍ରଚଳିତ ଅଛି । କିନ୍ତୁ ସେ ସବୁର କୌଣସି ବୈଜ୍ଞାନିକ ପରୀକ୍ଷା ବା ପ୍ରମାଣ ନାହିଁ । ତା ସତ୍ତ୍ୱେ ଗୋଟିଏ ଝିଅର ଜନ୍ମକୁ ନେଇ ଏପରି ଅନେକ କୁସଂସ୍କାର ଓ ଅନ୍ଧ ବିଶ୍ୱାସ ରହିଆସିଛି । ଏହାର ବୋଧହୁଏ କାରଣ ହୋଇପାରେ ଯେ ଆମର ସମାଜ ପୁରୁଷ–ପ୍ରଭାବିତ ସମାଜ । ସେମାନେ ହେଲେ ବଳବାନ । ତେଣୁ ସେମାନେ ଯାହା ଠିକ୍ ବୋଲି ଭାବନ୍ତି ତାହା କରିଯାଉଛନ୍ତି । ଦ୍ୱିତୀୟରେ କେତେକ ସମାଜରେ ଥିବା ଯୌତୁକ ପ୍ରଥା ଝିଅମାନଙ୍କର ବିବାହ ପାଇଁ ଏକ ପ୍ରତିବନ୍ଧକ । ତେଣୁ ଅନେକ ବାପମାଆ ଝିଅ ଜନ୍ମହେଲେ ଚିନ୍ତିତ ହୋଇପଡ଼ନ୍ତି । ଏ ସବୁ ପ୍ରତି ବନ୍ଧକ ଦୂର ହୋଇପାରିଲେ ଝିଅମାନଙ୍କର ମାନସିକ ବିକାଶ ପରିପ୍ରୂର୍ଣ୍ଣତା ଲାଭ କରିବ । ବାଳିକାମାନେ ବୌଦ୍ଧିକ ଯୋଗତାରେ ବାଳକମାନଙ୍କଠାରୁ କମ୍ ନୁହନ୍ତି । ଏକଥା ପ୍ରମାଣିତ ହୋଇପାରିବ ।

---

ମନୋବିଜ୍ଞାନ ପ୍ରାଧ୍ୟାପକ,
ପଞ୍ଚାୟତ କଲେଜ,
ବରଗଡ଼–୭୬୮୦୨୮,
ଜିଲ୍ଲା–ସମ୍ବଲପୁର ।



ଭୁବନେଶ୍ୱରଠାରେ ଏକ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି (୨୮/୧୧) ।

# ଲକ୍ଷ୍ମୀଙ୍କ ଦୁର୍ଜ୍ଜୟ ଅଭିମାନ

ଶ୍ରୀ ବସନ୍ତ କୁମାର ଦାସ

ବହୁ ଦେଶ ବା ଅଞ୍ଚଳରେ ପ୍ରତିଷ୍ଠିତ ଦେବ ଦେବୀ ଅଛନ୍ତି। କିନ୍ତୁ କୌଣସି ଦେଶ ବା ଅଞ୍ଚଳରେ ସେହି ଦେବ ଦେବୀ ଉକ୍ତ ଅଞ୍ଚଳରେ ସଂସ୍କୃତି ଉପରେ ଏତେ ପ୍ରଭାବ ପକାଇ ପାରିଥିବା ଏ ପର୍ଯ୍ୟନ୍ତ ଦୃଷ୍ଟି ଗୋଚର ହୋଇ ନାହିଁ। କିନ୍ତୁ ଓଡ଼ିଶା ରାଜ୍ୟ ତା'ର ଏକ ବ୍ୟତିକ୍ରମ ଏବଂ ଶ୍ରୀ ଜଗନ୍ନାଥ ତା'ର ଏକ ବ୍ୟତିକ୍ରମ।

ଓଡ଼ିଶାର ଇତିହାସ, ସଂସ୍କୃତି, ସମାଜ ଓ ସାମାଜିକ ଚେତନା ସର୍ବତୋ ଭାବେ ଶ୍ରୀ ଜଗନ୍ନାଥୀୟ ଭାବଧାରାରେ ଆପ୍ଲୁତ ଏବଂ ସେହି ଜଗନ୍ନିୟନ୍ତା ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ରକରି ଏମାନଙ୍କର ସୃଷ୍ଟି ବିକାଶ, ପ୍ରସ୍ତର ଓ ପ୍ରସାରର ମାର୍ଜିତ ଆବେଦନ ଆନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତି ଲାଭ କରି ତିଷ୍ଠି ରହି ପାରିଛି।

ଶ୍ରୀ ଜଗନ୍ନାଥ ଓଡ଼ିଆ ଜାତିର ଖିଆଣୀ ଚଳଣୀ ଓ ଚିନ୍ତା ସହିତ ଓତଃ ପ୍ରୋତ ଭାବେ ଜଡ଼ିତ। ତେଣୁ ଶ୍ରୀ ଜଗନ୍ନାଥ ଯେପରି ଏ ଦେଶର ରାଜାଙ୍କ ସହିତ ଦିଗ୍‌ବିଜୟରେ ଯାଇଛନ୍ତି ସେହିପରି ଦୁଃସ୍ଥ ଅଛବ ନିରକ୍ଷର ଦାସିଆର ପ୍ରେରିତ ଭକ୍ତି ପ୍ଲୁତ ନାରୀକେଳକୁ ହସ୍ତ ପ୍ରସାରଣ କରି ଗ୍ରହଣ କରିଛନ୍ତି। ଦାସିଆର ଭକ୍ତିପ୍ଲୁତ ଦାବୀ ଥିଲା ବଳିଷ୍ଠ,

ଏ' ମୋ ଶ୍ରୀଫଳ ହସ୍ତଧରି
ଗରୁଡ଼ ପଛେ ରହିକରି।
ବୋଲିବ ବାଳିଗ୍ରାମ ଦାସ
ଦେଇଛି ନିଅ ପୀତବାସ ॥
ସେ ଯେବେ ଶ୍ରୀହସ୍ତ ବଢ଼ାଇ
ତୁମର ହସ୍ତରୁ ଛଡ଼ାଇ,
ଘେନିବେ ଯେବେ ତାଙ୍କୁ ଦେବ
ନୋହିଲେ ମୋତେ ଫେରାଇବ ॥

ପୁଣି ସେହି ଜଗନ୍ନାଥ ବରପୁତ୍ର କବି ଜୟଦେବଙ୍କର ରଚିତ ଗୀତ–ଗୋବିନ୍ଦର ସରସ ସୁନ୍ଦର ପଦାବଳୀ ମାଳ୍ୟାଣୀ କଣ୍ଠରୁ ଶୁଣିବାକୁ ବାର୍ତ୍ତାକୀ କିଆରୀରେ ବୁଲି ବୁଲି ନିଜର ଅମୂଲ୍ୟ ପରିଧାନକୁ କଣ୍ଟକିତ କରିଛନ୍ତି। ସେହିପରି ନିଜର ପ୍ରାଣପ୍ରିୟା ପତ୍ନୀଙ୍କଠାରୁ ଭର୍ତ୍ସନା ଶୁଣି ବାରଦ୍ୱାର ହେବାକୁ ବି ପଛାଇ ନାହାନ୍ତି। ଏଣୁ ଶ୍ରୀ ଜଗନ୍ନାଥ ଧାମ ବା ପୁରୁଷୋତ୍ତମ କ୍ଷେତ୍ରରେ ସର୍ବ ଧର୍ମର ସମନ୍ୱୟ ଘଟିଛି ଏବଂ ଏଠାରେ ଏକ ସାମ୍ୟବାଦୀ ଚେତନା ଓ ପରମ୍ପରାର ଉନ୍ମେଷ ପ୍ରବାହିତ ହୋଇଛି।

ଜଗନ୍ନାଥ ସଂସ୍କୃତିର ବିକାଶ ଧାରା ପ୍ରତ୍ନତାତ୍ତ୍ୱିକ ଏବଂ ଐତିହାସିକ ଭିତ୍ତିଭୂମି ଉପରେ ଯେତିକି ପ୍ରତିଷ୍ଠିତ ହୋଇ ପାରିନାହିଁ, କିମ୍ବଦନ୍ତୀ, ପରମ୍ପରା ଏବଂ ପୌରାଣିକ ଆଖ୍ୟାୟିକ ଏହାକୁ ଋଦ୍ଧିମନ୍ତ କରି ପାରିଛି।

ଜଗନ୍ନାଥ ଯେ, ପାରିବାରିକ ଜୀବନର ଏକ ଶ୍ରେଷ୍ଠ ନିଦର୍ଶନ ଏବଂ ଦାମ୍ପତ୍ୟ ଜୀବନର ପ୍ରତୀକ ତାହାର ମଧ୍ୟ ଏକ ତାତ୍ତ୍ୱିକ ଆଭିମୁଖ୍ୟ ରହିଛି। ଆଲୋଚ୍ୟ ପ୍ରବନ୍ଧରେ ପାରିବାରିକ ଜୀବନର ଏକ ନିଖୁଣ ଚିତ୍ର ଉପସ୍ଥାପନ କରିବାର ଚେଷ୍ଟା କରାଯାଇଛି ଯେଉଁ ଚରିତ୍ରର ମୁଖ୍ୟ ନାୟକ ହେଉଛନ୍ତି ନିଜେ ଶ୍ରୀ ଜଗନ୍ନାଥ ପତ୍ନୀ ଲକ୍ଷ୍ମୀ ଏବଂ ଅଗ୍ରଜ ବଳଭଦ୍ର।

ଜଗନ୍ନାଥଙ୍କ ସିଂହଦ୍ୱାରରେ ମନୁଷ୍ୟ ଦେବତା ରୂପେ ଯେପରି କଳ୍ପିତ ହୋଇଅଛି, ଦେବତା ମଧ୍ୟ ସେପରି ମନୁଷ୍ୟରେ ପରିଣତ ହୋଇଅଛି। ସେଥିପାଇଁ ଲକ୍ଷ୍ମୀ ଯେପରି ଈର୍ଷାତୁରା, ଅଭିମାନିନୀ ସ୍ୱକୀୟାରେ ପ୍ରତଷ୍ଠ ହୋଇଅଛନ୍ତି। ଜଗନ୍ନାଥ ମଧ୍ୟ ସେହିପରି ପତ୍ନୀ ନିଗ୍ରହିତ ଏକ ଅନୁତପ୍ତ ଅସହାୟ ସ୍ୱାମୀରେ ପରିଣତ ହୋଇଛନ୍ତି।

ଜଗନ୍ନାଥ ରଥରୁ ଓହ୍ଲାଇବା ଅବସରରେ ଲକ୍ଷ୍ମୀ ମନ୍ଦିରର ସିଂହଦ୍ୱାର ବନ୍ଦ କରିଦେଲେ। ଅଭିମାନିନୀ, କୁପିତା ଲକ୍ଷ୍ମୀଙ୍କ ଦୁର୍ଜ୍ଜୟ ଅଭିମାନ; ସିଂହଦ୍ୱାର ବାହାରେ ରଥ ଉପରେ ପଡ଼ି ପଡ଼ି ଜଗନ୍ନାଥଙ୍କର ଗୋଟିଏ ଦିନ ଖାଦା ଉପବାସରେ କଟିଗଲା। କ୍ଷୁଧାର ନିବୃତ୍ତି ପାଇଁ ସ୍ୱ ମନ୍ଦିରକୁ ଯିବାଛଡ଼ା ଉପାୟନ୍ତର ନାହିଁ। ମାତ୍ର ସେ ବାଟଟି ବନ୍ଦ ଲକ୍ଷ୍ମୀଙ୍କ କୋପରୁ, ଅଧରପଣା ଏକାଦଶୀଟା ତେଣୁ ବିଧବାମାନଙ୍କ ପରି ନିର୍ଜଳା ଉପବାସରେ କଟିଗଲା, ବହୁ ଚେଷ୍ଟାରେ ଜଗନ୍ନାଥଙ୍କୁ ସାଟୀ, ଛେନା, କଦଳୀ ଚକଟାରେ ଯେଉଁ ଅଧର ପଣା ହାଣ୍ଡିଏ ମିଳିଥିଲା ଭିକାରୀର ତୁଷାପରି ଗୋଟିଏ ସରୁମୁହାଁ ହାଣ୍ଡିରେ।

ଜଗନ୍ନାଥ ରଙ୍ଗାଧର ତାଙ୍କୁ ସ୍ପର୍ଶ କଲା ସିନା, ସେଥିରେ କିନ୍ତୁ ବିଶ୍ୱ ତୃଷ୍ଣା ପ୍ରଶମିତ ହେଲା ନାହିଁ; ଲକ୍ଷ୍ମୀଙ୍କ କୋପରେ ସେ ତୃଷାକୁ

ଖଣ୍ଡ ଖଣ୍ଡ ହୋଇ ରଥ ଉପରେ ଭାଙ୍ଗିପଡ଼ିଲା । ଦ୍ୱାଦଶୀ ଦିନଟା ମଧ୍ୟ ନିରୋଳା ଉପବାସରେ କଟିବାକୁ ଲାଗିଲା; ତଥାପି ଲକ୍ଷ୍ମୀଙ୍କ ଦୁର୍ଜ୍ଜୟ ଅଭିମାନ ଭାଙ୍ଗିଲା ନାହିଁ । ଜଗନ୍ନାଥଙ୍କୁ ମନ୍ଦିର ପ୍ରବେଶ ନିଷିଦ୍ଧ କରିବାର ଅଭିନୟ ମଧ୍ୟରେ ସେହି ସଙ୍ଘର୍ଷ ଓ ସମନ୍ୱୟର ସ୍ମୃତିକୁ ଏକ ଧର୍ମାଗ୍ରନ୍ଥରେ ଆବରଣ ଦିଆ ଯାଇଅଛି ମାତ୍ର ।

ହିନ୍ଦୁ ଧର୍ମାଚରଣରେ ତତ୍ତ୍ୱର ଶୁଷ୍କ ରସହୀନ କ୍ଲିଷ୍ଟତା ନାହିଁ । କାବ୍ୟ ବର୍ଣ୍ଣନାରେ ତାହା ରସମୟ । ସେଥିପାଇଁ ଏହି ଐତିହାସିକ ଘଟଣାକୁ କାହାଣୀ ଓ କାବ୍ୟ ଧର୍ମାଚରଣ ପଦ୍ଧତିରେ ଜୀବନ୍ତ ରଖା ଯାଇଛି । ଏଠାରେ ଲକ୍ଷ୍ମୀ ହୋଇଛନ୍ତି ଖଣ୍ଡିତା ସ୍ୱକୀୟା ନାୟିକା ଓ ଜଗନ୍ନାଥ ହୋଇଛନ୍ତି ପରକୀୟା ପ୍ରଲୁବ୍ଧ ଧୂର୍ତ୍ତ ନାୟକ । ଜଗନ୍ନାଥଙ୍କ ପରକୀୟା ବିଳାସରେ ଲକ୍ଷ୍ମୀ କ୍ରୋଧରେ ଜଗନ୍ନାଥଙ୍କୁ ମନ୍ଦିର ଭିତରକୁ ବାଟ ଛାଡ଼ି ନାହାନ୍ତି । ଏଥିରେ ମଧ୍ୟ ଗୋଟିଏ ସାଧାରଣ ଗୃହସ୍ଥ ଜୀବନର ରସୋଜ୍ଜ୍ୱଳ କାହାଣୀ ଯୋଡି ଦିଆ ଯାଇଛି ।

ବିଷ୍ଣୁଘରଣୀ ଲକ୍ଷ୍ମୀଙ୍କ ଯାତାୟତ ସବୁବେଳେ ଚଣ୍ଡାଳ ପଲ୍ଲୀରେ । ଶ୍ରୀୟା ଚଣ୍ଡାଳୁଣୀ ତାଙ୍କର ପରମ ସେବିକା । ଏହା ଫଳରେ ଲକ୍ଷ୍ମୀଜାତି ହରାଇଥିବା ସାଙ୍ଗକୁ ନିଜ ବଂଶ ମର୍ଯ୍ୟାଦା ଉପରେ ଆଘାତ ଆଣିଥିବା ଦେଖି ଜଗନ୍ନାଥଙ୍କ ବଡ଼ଭାଇ ବଳଦେବ ଜ୍ୟେଷ୍ଠର ଅଧିକାର ସାବ୍ୟସ୍ତ କରି ଜଗନ୍ନାଥଙ୍କୁ ସ୍ପଷ୍ଟ କହିଦେଲେ !

"ଆମ୍ଭ ବାକ୍ୟ ମାନି ତାକୁ ଦିଅ ଘଉଡାଇ
ଏପରି ଘରଣୀ ଥିଲେ ଭଲ ଗତି ନାହିଁ ।"

କିନ୍ତୁ ଲକ୍ଷ୍ମୀଙ୍କୁ ମାର୍ଜନା କରିବା ପାଇଁ ଜଗନ୍ନାଥ ବଡ ଭାଇଙ୍କୁ ବୁଝାଇ କହିଲେ,

"ସେ ଯେବେ ଦୋଷ କରିଛି ଏମନ୍ତ କରିବା,
ସ୍ୱର୍ଗପୁର ଲୋକଙ୍କୁ ହକାରି ଅଣାଇବା
ପାଞ୍ଚଲକ୍ଷ ଟଙ୍କା ଦେଇ ଜାତି କରାଇବା
ଆଉବେଳେ ତା'ର ଯଦି ଅନୀତି ଦେଖିବା
ଦେଉଳ ଭିତରୁ ତାକୁ ଦେବା ଘଉଡାଇ
ଏ କଥା ପ୍ରମାଣ ତୁମ୍ଭେ ଶୁଣ ଜ୍ୟେଷ୍ଠ ଭାଇ ।"

କିନ୍ତୁ ଲକ୍ଷ୍ମୀ ସ୍ୱେଚ୍ଛା ବିହରିଣୀ, ଆଉଦିନେ ଚଣ୍ଡାଳ ପଲ୍ଲୀରୁ ଫେରି ଲକ୍ଷ୍ମୀ ଦେଉଳ ଭିତରକୁ ଯାଉଥିବା ବେଳେ ଜଗନ୍ନାଥ ତାଙ୍କୁ ଦେଖିପାରି ଖୁବ୍ କୁପିତ ହୋଇ କହିଲେ;

"ଜଗତେ ବୋଲନ୍ତି ତୋତେ ବାଇ ଠାକୁରାଣୀ
ବାଇ ପ୍ରାୟ ବୁଲୁଥାଉ ହୋଇ ମୋ ଘରଣୀ
ଏକଘର କରାଉ ସହସ୍ର ଘର ଭାଙ୍ଗି
ସହସ୍ର ଘର କରାଉ ଏକ ଘର ଭାଙ୍ଗି
ଏ ମନ୍ତ ପ୍ରକାର ଲକ୍ଷ୍ମୀ ମହିମା ତୋହର
ଯାଅ ଲକ୍ଷ୍ମୀ ବାହାରି ଗୋ ନଥାଅ ମୋ ଘର ।"

ସ୍ୱାମୀଙ୍କର ଏ ପ୍ରକାର ଭର୍ତ୍ସନାରେ ରୁଷ୍ଟା ହୋଇ ଲକ୍ଷ୍ମୀ ଜିଦ୍ ଧରିଲେ;

"ଛାଡ ପତ୍ର ଦେଇ ମତେ ଦିଅ ଘଉଡାଇ",

ଏହା ପରେ ଦାମ୍ପତ୍ୟ କଳହଟି ବେଶ୍ ଉତପ୍ତ ହୋଇ ଉଠିଲା ।

"ଜଗନ୍ନାଥ କହୁଛନ୍ତି ଲକ୍ଷ୍ମୀ ମୁଖ ଚାହିଁ ।
ଆମ୍ଭ ଜାତିରେ ଗୋ ଛାଡପତ୍ର ଚଳେ ନାହିଁ ।।"

ଲକ୍ଷ୍ମୀ ବେଶ୍ ସ୍ୱେଚ୍ଛାରେ ବାହାରି ଯାଆନ୍ତୁ; ମାତ୍ର ଲକ୍ଷ୍ମୀ ସହଜରେ ଛାଡିଯିବାର ପାତ୍ରୀ ନୁହଁନ୍ତି; ଜଗନ୍ନାଥଙ୍କୁ ସେ ଯଥେଷ୍ଟ ଖୁଣ୍ଟା ଦେବାରୁ ଜଗନ୍ନାଥ ସେ ସବୁକୁ ସହ୍ୟ କରି ନପାରି ପ୍ରଚଣ୍ଡ କ୍ରୋଧରେ କହିଛନ୍ତି,

"ଜଗନ୍ନାଥ କହୁଛନ୍ତି କୋପଭରେ ହୋଇ
ବାପ ତୋ ଲୁଣିଆ ଗରଜି ମରୁଥାଇ;
ଝିଅ ଟେରୀ ତୋ' ଦୁର୍ଗୁଣ କହିଲେ ନସରେ
ବାପର ଗର୍ଜନ ଶବ୍ଦେ କିଏ ରହିପାରେ ।।"

ନାରୀ ପକ୍ଷେ ସବୁ ନିର୍ଯ୍ୟାତନା ସହ୍ୟ କରିବା ସମ୍ଭବ, କିନ୍ତୁ ପିତୃକୁଳର ନିନ୍ଦା କନ୍ୟା ପକ୍ଷେ ଅସହ୍ୟ ହୋଇ ଉଠେ; ଲକ୍ଷ୍ମୀତେଣୁ ଅଶ୍ରୁଭରା କଣ୍ଠରେ କହିଲେ,

"ଗାଣ୍ଡ ଅଲକ୍ଷଣୀ ଝିଅ ମୁହିଁସେ ନୁହଁଇ
ପିତାର ଘରକୁ ମୁଁ ଯେ ବାହାରି ଯିବଇଁ
ତୁମ୍ଭ ଅଳଙ୍କାର ମାଳ ପ୍ରଭୁ କାଢ଼ି ନିଅ
ପଛରେ ମୋତେ ଆଉଯେ ବୋଲଣା ନଦିଅ ।"

ଭାରିଜା ଦେହରୁ ଅଳଙ୍କାର କାଢ଼ି ରଖିବା ନିତାନ୍ତ ଅବିଧି । ଜଗନ୍ନାଥ ଏଥିରେ ମହା ଅଡୁଆରେ ପଡ଼ି ଅଳଙ୍କାର ସବୁ ଛାଡ଼ପତ୍ର ବିଧାନ ଅନୁସାରେ ଛ'ମାସ ପାଇଁ ଲକ୍ଷ୍ମୀଙ୍କ ଭାତ ଲୁଗା ବାବଦକୁ ଗଲା ବୋଲି କହିଲେ । ମାତ୍ର ପତି ଲାଞ୍ଛନା ଲକ୍ଷ୍ମୀଙ୍କ ଗ୍ଳାନି ସାମାନ୍ୟ ଅଳଙ୍କାର ଲୋଭରେ ଯିବାର ନୁହେଁ ସେ ପୁଣି ସହଜେ ରତ୍ନାକର–ଦୁହିତା; ଲକ୍ଷ୍ମୀ ତେଣୁ କହିଲେ,

"ମୋହତୁଲ୍ୟ ଆଉଯେଉଁ ଭାରିଯା ଆଣିବ
ଏହି ଅଳଙ୍କାର ସବୁ ତାହାକୁ ଯେ ଦେବ ।
ମୋର ଅଭିଶାପ ଘେନ ପ୍ରଭୁ ଭାବଗ୍ରାହୀ
ସତେ ଯେବେ ଚନ୍ଦ୍ର ସୂର୍ଯ୍ୟ ହୋନ୍ତି ଆତଜାତ
ତୁମ୍ଭଙ୍କୁ ଅନ୍ନ ନ ମିଳୁ ଆହେ ଜଗନ୍ନାଥ ।
ବାରବର୍ଷ ଯାଏ ତୁମ୍ଭେ ଦରିଦ୍ର ହୋଇବ
ଅନ୍ନ ବସ୍ତ୍ର ଯେ ତୁମ୍ଭଙ୍କୁ ନ ମିଳିବ ।।"

ଜଗନ୍ନାଥ ବଳଭଦ୍ରଙ୍କୁ ସେହି ଅଭିଶାପ ଏବେ ଫଳିଗଲା । ସେହି କିମ୍ବଦନ୍ତୀ ଫଳ ସ୍ୱରୂପ ଦ୍ୱାଦଶୀ ବାରଦିନର ସଙ୍କେତରେ ବାର ବର୍ଷର ସେହି ଲକ୍ଷ୍ମୀହୀନ ଅଭିଶାପ ଆଜି ଖଣ୍ଡିତ ହେବ । ବାରବର୍ଷ କାଳ ବାରଦ୍ୱାର ବୁଲି ବୁଲି ଜଗନ୍ନାଥ ପୁଣି ଆଜି ଦେଉଳ ଭିତରକୁ ଫେରିବେ ଓ ଲକ୍ଷ୍ମୀଙ୍କ ପରଷାଖାଇ ତାଙ୍କର ବିଶ୍ୱକ୍ଷୁଧା ମେଣ୍ଟାଇବେ ।

ଲକ୍ଷ୍ମୀ ପୁରାଣ ପୁସ୍ତକରେ ଆଲୋଚନାରୁ ଆହୁରି ମଧ୍ୟ ଜଣାଯାଏ ଯେ, କବି ବଳରାମ ଦାସ ଯେ କି ଲକ୍ଷ୍ମୀ ପୁରାଣର ରଚୟିତା ସେ ଜଗନ୍ନାଥଙ୍କ ମାଧ୍ୟମରେ ତତ୍କାଳୀନ ସମାଜରେ ଅସ୍ପୃଶ୍ୟତାର ବ୍ୟାଧି ଚରମ ସୋପାନରେ ଉପଗତ ହୋଇଥିବା ବେଳେ ତା'ର ଦୂରୀକରଣ ପାଇଁ ଜଗନ୍ନାଥଙ୍କର ଅତିପ୍ରିୟ ଭକ୍ତ ପଞ୍ଚସଖା (ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ଜଗନ୍ନାଥ, ବଳରାମ) ଦୃଢ଼ ସ୍ୱର ଉତ୍ତୋଳନ କରିଥିଲେ ଏବଂ ନୂତନ ବିପ୍ଳବର ସୂତ୍ରପାତ କରାଇଥିଲେ । ଯାହାକି ସେମାନଙ୍କର ସ୍ୱରଚିତ ରଚନା ମାନଙ୍କରେ ଦେଖିବାକୁ ମିଳିଥାଏ । ତାହା ଥିଲା ତତ୍‌କାଳୀନ ସମାଜର ବଡ଼ ପଣ୍ଡାମାନଙ୍କୁ ପ୍ରତି ସ୍ପର୍ଦ୍ଧା ମୂଳକ ଆହ୍ୱାନ ଏବଂ ସେ ଦାବୀ ଉପସ୍ଥାପିତ କରିଥିଲେ ଜଗନ୍ନାଥଙ୍କ ଘରଣୀ ଲକ୍ଷ୍ମୀଙ୍କ ମାଧ୍ୟମରେ,

"ଚଣ୍ଡାଳୁ ବ୍ରାହ୍ମଣ ଯାଏ ଛୁଆଁ ଛୁଇଁ ହେବେ
ହାଡ଼ି ହସ୍ତୁ ବ୍ରାହ୍ମଣ ଯେ ଛଡାଇ ଖାଇବେ ।"

ଉକ୍ତ ପଂକ୍ତିରୁ ସ୍ପଷ୍ଟ ପ୍ରତୀୟମାନ ହୁଏଯେ, କବି ତଥା କଥିତ ଉଚ୍ଚ ଶ୍ରେଣୀୟ ବ୍ୟକ୍ତି ମାନଙ୍କ ମନରେ, ସମାଜରେ ଅବହେଳିତ ନିମ୍ନ ଶ୍ରେଣୀର ଲୋକ ମାନଙ୍କ ପ୍ରତି ଯେଉଁ ଜାତିଗତ ବାସନ୍ଦ ବା ସାମାଜିକ ବୈଷମ୍ୟ ଥିଲା ତା'ର ଦୂରୀକରଣ ଲାଗି ଏହା ଏକ ଅଭିନବ ପଦକ୍ଷେପ । କେବଳ ସେତିକି ନୁହେଁ ପାରସ୍ପରିକ ସ୍ନେହ ଆନ୍ତରିକତାର ଅଭାବରେ ପାରିବାରିକ ପରିବେଶ କିପରି ବିଷାକ୍ତ ହୋଇଥାଏ ଏବଂ ଦାମ୍ପତ୍ୟ ଜୀବନର ସଫଳତାରେ କିଭଳି ବ୍ୟତିକ୍ରମ ଘଟାଇ ଥାଏ ଏହାକୁ ଦେଖାଇ ଦେବା ଥିଲା କବିଙ୍କର ମୁଖ୍ୟ ଉଦ୍ଦେଶ୍ୟ ।

ସେହି କିମ୍ବଦନ୍ତୀର ସ୍ମୃତି ବହନ କରି ...
ଦୂରରେ ଚଣ୍ଡାଳ ପଲ୍ଲୀ । ପୁରୀ ସହରକୁ ସମୁଦ୍ର ଗର୍ଜନ ଶୁଭୁଥିବ ବେଳେ ଶ୍ରୀମନ୍ଦିରକୁ ସମୁଦ୍ର ଗର୍ଜନ ନଶୁଭିବା ଜଣା ଅଛି ।

ପ୍ରତି ମାର୍ଗଶିର ମାସରେ ମାସକ ପାଇଁ ଲକ୍ଷ୍ମୀ ଶ୍ରୀମନ୍ଦିର ଛାଡି ବାପ ଘରକୁ ଯିବାର ବିଧି ଅଛି ଏବଂ ସେହି ମାସକରେ ସ୍ୱେଚ୍ଛା ବିହରଣ ପାଇଁ ସ୍ୱାଧୀନତା ମିଳିଛି ।

ସେହି ସ୍ମୃତି ବିଜଡିତ ସ୍ମାରକୀ ବହନ କରି, ଉତ୍କଳୀୟ ହିନ୍ଦୁ ପରିବାର ମାର୍ଗଶିର ମାସ ଗୁରୁବାର ମାଧ୍ୟମରେ; ଆଚଣ୍ଡାଳ ବ୍ରାହ୍ମଣ ସବୁରି ଗୃହରେ ଲକ୍ଷ୍ମୀ ପୂଜାର ବିରାଟ ସମ୍ଭାର ଏବଂ ବର୍ଣ୍ଣାଢ଼୍ୟ ପରିବେଶ ।

ସେହି ମାସକ ପାଇଁ ଶ୍ରୀମନ୍ଦିରରେ ବ୍ରହ୍ମ ମୁହୂର୍ତ୍ତରେ ନିଜର ପୁଅକୁ ପହିଲି ଭୋଗ ଦିଅନ୍ତି ଜଗନ୍ନାଥଙ୍କ ମା' ବିମଳା, ସତେ କି ଚମତ୍କାର ପାରିବାରିକ ପରିକଳ୍ପନା?

ଶ୍ରୀମନ୍ଦିର ବଡ ଧୂପର ପ୍ରଥମ ନୈବେଦ୍ୟ ମା'ଙ୍କ ନିକଟରୁ ନ ଆସିବା ପର୍ଯ୍ୟନ୍ତ ତାହା 'ମହାପ୍ରସାଦ' ପଦବାଚ୍ୟ ହୋଇ ନପାରେ;

ସହାୟକ-ଲକ୍ଷ୍ମୀପୁରାଣ,
ନୀଳଶୈଳ- ସୁରେନ୍ଦ୍ର ମହାନ୍ତି,
ଶ୍ରୀଜଗନ୍ନାଥ-ଓଡ଼ିଶା ସାହିତ୍ୟ ଏକାଡେମୀ ।

ସିଦ୍ଧ ବାରଙ୍ଗ ପୀଠ,
ଜଗତସିଂହପୁର, କଟକ ।


ଜଟଣୀଠାରେ ପ୍ରାଣନାଥ ପଟ୍ଟନାୟକଙ୍କ ସ୍ମୃତି ଉଦ୍ଦେଶ୍ୟରେ ଅନୁଷ୍ଠିତ ଏକ ସଭାରେ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ମନ୍ତ୍ରୀ, ଶ୍ରୀ ପ୍ରସନ୍ନ କୁମାର ପାଟ୍ଟଶାଣୀ ଉଦ୍‌ବୋଧନ ଦେଉଛନ୍ତି । ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ, ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ମଞ୍ଚାସୀନ (୧୬/୧୧) ।

# ଲବଣାକ୍ତ ଜଳରେ ଚିଙ୍ଗୁଡ଼ି ଚାଷ

ଜୟନ୍ତ ଦାସ୍

ଯୁଗ ଆଗେଇବା ସାଙ୍ଗକୁ ଲବଣାକ୍ତ ଜଳ (brackish water)ରେ ଚିଙ୍ଗୁଡ଼ି ଚାଷର ପ୍ରାଧାନ୍ୟ ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି । ଏହି ମହାନ୍ ପ୍ରଚେଷ୍ଟାର କେତେକ ଗୁରୁତ୍ୱପୂର୍ଣ୍ଣ ଆଭିମୁଖ୍ୟ ରହିଛି । ସେଗୁଡ଼ିକ ହେଲା — ବାହ୍ୟ ଦେଶମାନଙ୍କୁ ବହୁ ପରିମାଣରେ ଉନ୍ନତ ମାନର ଚିଙ୍ଗୁଡ଼ି ରପ୍ତାନୀ କରି ଦେଶ ପାଇଁ ବହୁମୂଲ୍ୟ ବୈଦେଶିକ ମୁଦ୍ରା ଅର୍ଜନ କରିବା ଏବଂ ଏ ଦେଶର ଚିଙ୍ଗୁଡ଼ି ଚାଷିମାନଙ୍କର ଅର୍ଥନୈତିକ ପ୍ରଗତି କରିବା । ଏହା ସାଧାରଣତଃ ଗ୍ରାମାଞ୍ଚଳରେ ବାସ କରୁଥିବା ଲୋକମାନଙ୍କ ନିମନ୍ତେ ଅନୁକୂଳ । ଚିଙ୍ଗୁଡ଼ି ଚାଷ ଏବଂ ଏହାର ବ୍ୟବସାୟ ମାଧ୍ୟମରେ ସେମାନଙ୍କର ଦାରିଦ୍ର୍ୟ ଦୂରୀକରଣ ହେବା ସହିତ ଅଧିକରୁ ଅଧିକ ବେକାର ଯୁବକ ଏହି କାର୍ଯ୍ୟରେ ନିୟୋଜିତ ହେବା ଦ୍ୱାରା ଯଥାସମ୍ଭବ ବେକାରୀ ସମସ୍ୟାର ସମାଧାନ ହୋଇ ପାରୁଛି ।

ପରୀକ୍ଷାମୂଳକ ଭାବେ ଦେଖାଯାଇଛି, ସମୁଦ୍ର ଜଳରୁ ବହୁଳ ପରିମାଣରେ ଚିଙ୍ଗୁଡ଼ି ଧରାଯିବା ଦ୍ୱାରା ଏମାନଙ୍କ ସଂଖ୍ୟା ପୂର୍ବାପେକ୍ଷା କମିବାରେ ଲାଗିଛି । ସୁତରାଂ ଏହାର ଚାହିଦା ପୂରଣ କରିବାକୁ ଆମ ଆଗରେ ଅଧୁନା ଏକମାତ୍ର ପନ୍ଥା — ତାହା ହେଲା, ଲବଣାକ୍ତ ଜଳରେ ଚିଙ୍ଗୁଡ଼ି ଚାଷ । ବର୍ତ୍ତମାନ ଯାହା ଜଣାଯାଏ, ଏହାଦ୍ୱାରା ଆମେ ନିଜ ଦେଶ ତଥା ବାହାର ଦେଶମାନଙ୍କର ଚିଙ୍ଗୁଡ଼ିର ଚାହିଦା ପୂରଣ କରିବାରେ ନିଶ୍ଚୟ ସକ୍ଷମ ହୋଇ ପାରିବୁ । ଭାରତକୁ ଛାଡ଼ିଦେଲେ ଚିଙ୍ଗୁଡ଼ି ଚାଷ ମାଲେସିଆ, ଥାଇଲ୍ୟାଣ୍ଡ, ତାଇୱାନ୍, ଫିଲିପାଇନ୍ସ୍, ଚାଇନା, ଜାପାନ ଏବଂ ଦକ୍ଷିଣ ଆମେରିକାର ଇକ୍ୱାଡ଼ର୍‌ରେ ଅତ୍ୟଧିକ ଲୋକପ୍ରିୟ ହୋଇପାରିଛି ।

ଭାରତବର୍ଷ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଏବଂ ଲବଣାକ୍ତ ଜଳରେ ଚିଙ୍ଗୁଡ଼ି ଚାଷ ନିମନ୍ତେ ସମ୍ପୂର୍ଣ୍ଣ ଅନୁକୂଳ । ଏହାର ସାମୁଦ୍ରିକ ଉପକୂଳ ୭,୫୦୦ କି: ମି:ରୁ ଅଧିକ, ଯାହା ପର୍ଯ୍ୟାପ୍ତ ପରିମାଣର ଲବଣାକ୍ତ ଜଳ ଚିଙ୍ଗୁଡ଼ି ଚାଷ ନିମନ୍ତେ ଯୋଗାଇ ଦେଇଥାଏ । ଦିନ ଥିଲା, ପୁରାତନ ଚିରାଚରିତ ପ୍ରଣାଳୀରେ ଚିଙ୍ଗୁଡ଼ି ଚାଷ କରାଯାଉଥିଲା । ଧାନ କ୍ଷେତ ମଧ୍ୟରେ ଜମି ରହୁଥିବା ପାଣିରେ ଚିଙ୍ଗୁଡ଼ି ଜାଆଁଳ ଛଡ଼ାଯାଇ ସେଠାରେ ସେମାନଙ୍କୁ ବଢ଼ିବାକୁ ଦିଆଯାଉଥିଲା । ଏହି ପଦ୍ଧତିରେ ସେତେ ଆଶାଜନକ ଉତ୍ପାଦନ ହେଉନଥିଲା । ଧିରେ ଧିରେ ଗବେଷକମାନେ ବୈଜ୍ଞାନିକ ପଦ୍ଧତିରେ ଉନ୍ନତ ମାନର ଚିଙ୍ଗୁଡ଼ି ଚାଷ କରିବାକୁ ପ୍ରୟାସ କଲେ । ଏହାଦ୍ୱାରା ଉତ୍ପାଦନ ତଥା ଚିଙ୍ଗୁଡ଼ିର ଗୁଣାତ୍ମକ ମାନ ବୃଦ୍ଧି ପାଇଲା । ଏହି ଆଧୁନିକ ପଦ୍ଧତିରେ ଭାରତବର୍ଷର ବିଭିନ୍ନ ପ୍ରାନ୍ତ, ଯଥା—ପଶ୍ଚିମବଙ୍ଗ, ଓଡ଼ିଶା, ଆନ୍ଧ୍ର ପ୍ରଦେଶ, ତାମିଲନାଡୁ, କର୍ଣ୍ଣାଟକ, ପଣ୍ଡିଚେରୀ, ଗୋଆ, ଗୁଜୁରାଟ ଏବଂ ମହାରାଷ୍ଟ୍ରରେ ଚିଙ୍ଗୁଡ଼ି ଚାଷ ଆରମ୍ଭ ହେଲା ।

ଯଦିଓ ବର୍ତ୍ତମାନ ଏହି ପ୍ରଣାଳୀ ଅନୁସରଣ କରି ଚାଷିମାନେ ଚିଙ୍ଗୁଡ଼ି ଚାଷ କରୁଛନ୍ତି, ତଥାପି କେତେକ ବ୍ୟତିକ୍ରମ ରହିଯିବା ଦ୍ୱାରା ପାଶ୍ଚାତ୍ୟ ଦେଶମାନଙ୍କ ତୁଳନାରେ ଏଠାରେ ସେମାନେ ଅନୁରୂପ ଫଳ ପାଇପାରୁ ନାହାନ୍ତି । ସେହି ସମସ୍ତ ମଧ୍ୟରୁ କେତେକ ମୁଖ୍ୟ ବ୍ୟତିକ୍ରମ ହେଲା ଫାର୍ମ ପରିଚାଳନାଗତ ତ୍ରୁଟି, ଉନ୍ନତମାନର ଚିଙ୍ଗୁଡ଼ି ଖାଦ୍ୟର ଅଭାବ, ଚିଙ୍ଗୁଡ଼ି ବଢ଼ୁଥିବା ଜଳର ଉପଯୁକ୍ତ ରକ୍ଷଣାବେକ୍ଷଣର ଅଭାବ, ନିମ୍ନମାନର ମୃତ୍ତିକା (ଯେଉଁଠାରେ ଏହି ଚାଷ ନିମନ୍ତେ ପୋଖରୀ ଖୋଳା ହୋଇଥାଏ), ଜଳରେ ଲବଣାଂଶର ନିର୍ଦ୍ଦିଷ୍ଟ ଅନୁପାତର ଅଭାବ, ଚିଙ୍ଗୁଡ଼ି ଜାଆଁଳର ଅଭାବ, ବୈଷୟିକ ଜ୍ଞାନକୁ ଦୃଷ୍ଟିରେ ନ ରଖି ତ୍ରୁଟିପୂର୍ଣ୍ଣ ପୁଷ୍କରିଣୀ ଖନନ, ସ୍ଥାନ ଅନୁପାତରେ ଚିଙ୍ଗୁଡ଼ି ସଂଖ୍ୟାର ଆଧିକ୍ୟ ଇତ୍ୟାଦି, ଏହି ସମସ୍ତ କାରଣ ଚିଙ୍ଗୁଡ଼ି ଚାଷ ଉପରେ ପ୍ରତିକୂଳ ପ୍ରଭାବ ପକାଏ ଏବଂ ସେମାନଙ୍କର ବୃଦ୍ଧିରେ ବାଧା ସୃଷ୍ଟି କରେ । ଏହା ସହିତ ସାବଧାନତା ସହକାରେ ସେମାନଙ୍କୁ ଧରା ନଗଲେ, ଜଳର ତାପମାତ୍ରା ବାରମ୍ବାର ପରିବର୍ତ୍ତନ ହେଲେ, ସେମାନେ ଉପଯୁକ୍ତ ଭାବେ ଖାଦ୍ୟ ଆହରଣ ନ କଲେ, ଜଳୀୟ ଅମ୍ଳଜାନର ଅଭାବ ଘଟିଲେ ଏବଂ ଶିଳ୍ପାଞ୍ଚଳ ତଥା ଜନବସତିରୁ ନିର୍ଗତ ଆବର୍ଜନା ଜଳରେ ମିଶି ତାହାକୁ ଦୂଷିତ ଏବଂ ବିଷାକ୍ତ କଲେ, ଚିଙ୍ଗୁଡ଼ି ଚାଷ କ୍ଷେତ୍ରରେ ଏକ ଭୟାବହ ପରିସ୍ଥିତି ସୃଷ୍ଟି ହୋଇଥାଏ, ଫଳରେ ସେମାନେ ସହଜରେ ରୋଗାକ୍ରାନ୍ତ ହୋଇ ପଡ଼ିବାର ସମ୍ଭାବନା ସୃଷ୍ଟି ହୁଏ । ବିଭିନ୍ନ ପ୍ରକାରର ମାରାତ୍ମକ ବ୍ୟାକ୍‌ଟେରିଆ, ଭାଇରସ୍, ଆଲ୍‌ଜି (ଶୈବାଳ) ଏବଂ ଫଙ୍ଗସ୍ ସେମାନଙ୍କୁ ସହଜରେ ଆକ୍ରମଣ କରନ୍ତି ।

ଚିଙ୍ଗୁଡ଼ି ଚାଷ ପାଇଁ ଆବଶ୍ୟକ ହେଉଥିବା ଖାଦ୍ୟ ଉଚ୍ଚ ମାନର ହେବା ଆବଶ୍ୟକ । ଏଥିରେ ଯେପରି ଅଭାବ ନ ଘଟେ, ସେଥିପାଇଁ କେତେକ ପଦକ୍ଷେପ ନିଆଯାଉଛି । ସେଥିମଧ୍ୟରୁ ମେସିନ୍ ପ୍ରସ୍ତୁତ ଗୁଟି–ଖାଦ୍ୟ (pellet-feed) ଅନ୍ୟତମ । କେତେକ ସାଧାରଣ ଉପାଦାନ, ଯଥା–ଚିଙ୍ଗୁଡ଼ିର ଖୋଳପା, କୁଣ୍ଡା, ବାଦାମ ପିଡ଼ିଆ, ଟାପିଓକା ବା ଗହମ ଗୁଣ୍ଡ ତଥା ଖଣିଜ ଲବଣର ମିଶ୍ରଣରେ ଏହି ଗୁଟି–ଖାଦ୍ୟ ପ୍ରସ୍ତୁତ କରାଯାଏ । ଏହି ଖାଦ୍ୟକୁ ଗୁଟି ଭାବେ ପ୍ରସ୍ତୁତ କରିବାର ଉଦ୍ଦେଶ୍ୟ – ଚିଙ୍ଗୁଡ଼ିମାନେ ତାଙ୍କ ଗୋଡ଼ରେ ଖାଦ୍ୟକୁ ଧରି ଖାଇବାରେ ଅଭ୍ୟସ୍ତ । ସେମାନଙ୍କୁ ଠିକ୍ ସମୟରେ ଉପଯୁକ୍ତ ପରିମାଣରେ ଖାଦ୍ୟ ଦିଆଯିବା ଆବଶ୍ୟକ । ସାଧାରଣତଃ ଏହା ସକାଳ ଓ ସନ୍ଧ୍ୟା ସମୟରେ ଦିଆଗଲେ ଉତ୍ତମ । ଯେପରି ସେମାନେ ଭୋକିଲା ନ ରହନ୍ତି କିମ୍ବା ଅତ୍ୟଧିକ ଖାଦ୍ୟ ନ ଖାଆନ୍ତି, ସେଥିପ୍ରତି ଦୃଷ୍ଟି ଦେବା ଆବଶ୍ୟକ, ଯଦ୍ଵାରା ସେମାନଙ୍କର ଉପଯୁକ୍ତ ବୃଦ୍ଧି ଘଟିବ । ଖାଦ୍ୟ ଯେପରି ନଷ୍ଟ ନହୁଏ ତାହା ମଧ୍ୟ ଦେଖିବା ଉଚିତ ।

ଖାଦ୍ୟର ଅଭାବକୁ ଦୂର କରିବା ପାଇଁ ଆଉ ଏକ ସଫଳ ପଦକ୍ଷେପ ସ୍ୱରୂପ ଚିଙ୍ଗୁଡ଼ି ବଢୁଥିବା ପୋଖରୀରେ କିଛି ଜଳଜ ଉଦ୍ଭିଦ (Zooplankton) ଚାଷ କରାଯାଇପାରେ । ଏହା କ୍ରମାଗତ ଭାବେ ସେମାନଙ୍କୁ ଜୀବସାର ପୂର୍ଣ୍ଣ ଖାଦ୍ୟ ଯୋଗାଇଥାଏ । ଏହି ଜଳଜ ଉଦ୍ଭିଦମାନଙ୍କ ଭିତରେ ଆର୍ଟେମିଆ, ରୋଟିଫର୍, ବ୍ରାକିଓନସ୍, ଡାଫ୍ନିଆ, ଓମାଇନା ଇତ୍ୟାଦି ଅନ୍ୟତମ ।

ବିଦେଶକୁ ରପ୍ତାନୀ କରି ଦେଶ ପାଇଁ ବୈଦେଶିକ ମୁଦ୍ରା ଅର୍ଜନ କରିବା ପାଇଁ ଅନେକ ପ୍ରତିଷ୍ଠାନ ଏବଂ ଚିଙ୍ଗୁଡ଼ି ଜାଆଁଳ ଉତ୍ପାଦନ କେନ୍ଦ୍ର ସ୍ଥାପନ କରାଯାଇଛି । ସେମାନଙ୍କ ମଧ୍ୟରୁ ସେଣ୍ଟ୍ରାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କୋଷ୍ଟାଲ୍ ଇଞ୍ଜିନିୟରିଂ ଫର୍ ଫିସେରିଜ୍, ସେଣ୍ଟ୍ରାଲ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ବ୍ରାକିସ୍‌ୱାଟର୍ ଆକୁଆକଲ୍‌ଚର୍, ବିଶାଖାପଟନମ୍ ଓ ଗୋପାଳପୁରସ୍ଥ କମର୍ସିଆଲ୍ ପ୍ରନ୍ ସିଡ୍ ପ୍ରଡ଼କ୍‌ସନ୍ ହାଚେରିଜ୍ ଉଲ୍ଲେଖଯୋଗ୍ୟ । ଏହାଛଡ଼ା ବେସରକାରୀ କ୍ଷେତ୍ରରେ ମଧ୍ୟ ଅନେକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ନିଆଯାଇଛି । କେତେକ ଭାରତୀୟ ଚିଙ୍ଗୁଡ଼ି ଚାଷୀ ବିଦେଶର କେତେକ ଫାର୍ମ୍ ସହ ମିଳିତ ଉଦ୍ୟୋଗରେ ବୈଜ୍ଞାନିକ ସମ୍ମତ ଚିଙ୍ଗୁଡ଼ି ଚାଷ କରିବା ପାଇଁ ଆଗେଇ ଆସିଛନ୍ତି । ଏହାର ଉତ୍ତରୋତ୍ତର ଉନ୍ନତି ପାଇଁ ସରକାରୀ ସ୍ତରରେ ଅନେକ ସୁବିଧା ବ୍ୟବସ୍ଥା କରାଯାଇଛି । ଏଥିପାଇଁ ସହାୟକ ହୋଇଛି ଏ ଦେଶର ବିସ୍ତୀର୍ଣ୍ଣ ଉପକୂଳ, ଉପଯୁକ୍ତ ଜଳବାୟୁ, ତୁଳନାତ୍ମକ ଅଣଦୂଷିତ ଜଳ ସମ୍ପଦ ଏବଂ ଉନ୍ନତ ମାନର ପର୍ଯ୍ୟାପ୍ତ ପରିମାଣର ଚିଙ୍ଗୁଡ଼ି ଜାଆଁଳର ଲବ୍‌ଧତା । ସମଗ୍ର ଭାରତବର୍ଷରେ ଗଢ଼ି ଉଠୁଥିବା ଏହି ଉଦ୍ୟୋଗ ଆଜି ବିଶ୍ୱ ବ୍ୟାଙ୍କ୍‌ର ଦୃଷ୍ଟି ଆକର୍ଷଣ କରିଛି । ବିଶ୍ୱ ବ୍ୟାଙ୍କ ସହାୟତାରେ ତିନିଗୋଟି ବିଶିଷ୍ଟ ଚିଙ୍ଗୁଡ଼ି ଗବେଷଣା କେନ୍ଦ୍ର, ଯଥାକ୍ରମେ ଆନ୍ଧ୍ର ପ୍ରଦେଶ, ପଶ୍ଚିମବଙ୍ଗ ଏବଂ ଓଡ଼ିଶାରେ ସ୍ଥାପିତ ହେବାକୁ ଯାଉଛି ଏବଂ ଖୁବ୍ ଶୀଘ୍ର କାର୍ଯ୍ୟ ଆରମ୍ଭ ହେବ । ଆଶା କରାଯାଏ, ଏଥି ନିମନ୍ତେ, ଉପଯୁକ୍ତ ସ୍ଥାନ ନିରୂପଣ ଏବଂ ଏହାର କାର୍ଯ୍ୟକାରୀ ଯୋଜନା ପ୍ରସ୍ତୁତ କରାଯାଉଛି । ବିଶ୍ୱବ୍ୟାଙ୍କର ଏହି ଅବଦାନ ନିଶ୍ଚିତ ଭାବେ ଚିଙ୍ଗୁଡ଼ି ଚାଷ ଯୋଜନାକୁ ଅଧିକ ତ୍ୱରାନ୍ୱିତ କରିବ, ଏଥିରେ ସନ୍ଦେହ ନାହିଁ । ବିଶ୍ୱ ବ୍ୟାଙ୍କ୍‌ର ଏକ ବିଶେଷଜ୍ଞ ଦଳ ଗଭୀର ଭାବେ ଚିନ୍ତା କରୁଛନ୍ତି, କିଭଳି ଭାବେ ଉତ୍କୃଷ୍ଟ ଚିଙ୍ଗୁଡ଼ି ଖାଦ୍ୟ ପ୍ରଚୁର ପରିମାଣରେ ଦେଶରେ ଉତ୍ପାଦିତ ହେବ । ଏହାଛଡ଼ା ଚିଙ୍ଗୁଡ଼ି ଜାଆଁଳ ପ୍ରସ୍ତୁତ କରିବା ପାଇଁ କେତେକ ଜାଆଁଳ ଉତ୍ପାଦନ କେନ୍ଦ୍ର (Hetcheries) ସ୍ଥାପନ କରିବା ଏମାନଙ୍କ ଯୋଜନାର ଅନ୍ତର୍ଭୁକ୍ତ । ଏଥିପାଇଁ ସେମାନେ ଓଡ଼ିଶାର ପୁରୀ–ପାରାଦ୍ୱୀପ ଏବଂ ଆନ୍ଧ୍ର ପ୍ରଦେଶର ବିଶାଖାପଟନମ୍–ଶ୍ରୀକାକୁଲମ୍ ମଧ୍ୟସ୍ଥ ଉପକୂଳବର୍ତ୍ତୀ ଅଞ୍ଚଳକୁ ଚିହ୍ନଟ କରିଛନ୍ତି ।

ଚିଙ୍ଗୁଡ଼ି ଉତ୍ପାଦନ ପରିମାଣ ନିକଟ ଭବିଷ୍ୟତରେ ନିଶ୍ଚିତ ଭାବେ ଦ୍ୱିଗୁଣିତ ହେବ, ଏଥିରେ ସନ୍ଦେହ ନାହିଁ । ଏହା କେବଳ ଆମ ଦେଶର ଚାହିଦା ପୂରଣ କରିବା ସାଙ୍ଗକୁ ବିଦେଶକୁ ରପ୍ତାନୀ କରି ପୃଥିବୀ ପୃଷ୍ଠରେ ନିଜର ସଫଳ ବୃଦ୍ଧି କରିପାରିବ ।

---

କଳିଙ୍ଗ ମେରାଇନସ୍ ଅଣ୍ଡ୍ ଟ୍ରାନସ୍‌ପୋର୍ଟ,
ସାଃ ଚାଁପୁର, ପୋଃ: ଖଣ୍ଡଗିରି
ଭୁବନେଶ୍ୱର ।

# ଭୁଜଙ୍ଗର ଶାପ ମୁକ୍ତି

ଡକ୍ଟର (ଶ୍ରୀମତୀ) ଲକ୍ଷ୍ମୀପ୍ରିୟା ଆଚାର୍ଯ୍ୟ

ଋତୁ ବସନ୍ତ, ମାସ ଫାଲ୍ଗୁନ । ଅରଣ୍ୟର ଶୀର୍ଷରେ ସବୁଜ ପତ୍ରର ସମାରୋହ, ଅସଂଖ୍ୟ ମୁନାରି ଫୁଲରେ ସବୁଜ ଅରଣ୍ୟରେ ମୁନାର ଢେଉ । 'ବଧୂସରା' ନଦୀ ତୀରର ଆଶ୍ରମର ନିର୍ଜନ ପରିବେଶ କଳ ମୁଖରିତ । ପ୍ରମତି ତନୟ ରୁରୁ ଆଶ୍ରମ ବାହାରକୁ ଆସି ଦେଖିଲେ ସମଗ୍ର ବନଭୂମିକୁ ଅସାମାନ୍ୟ ରୂପର ଆଲୋକରେ ଆଲୋକିତ କରି ଅପରିଚିତା ତରୁଣୀ ଋଷି କନ୍ୟାଗଣ ମୁନାରି ଫୁଲ ତୋଳିବାରେ ବ୍ୟସ୍ତ । ସେମାନଙ୍କ ଭିତରୁ ରୂପୋତମା କନ୍ୟାର ନାମ ଯେ ପ୍ରମଦ୍ବରା ଏତିକି ମାତ୍ର ଜାଣିବାକୁ ରୁରୁଙ୍କୁ ବେଶୀ ସମୟ ଲାଗିଲା ନାହିଁ ।

ରୁରୁଙ୍କ ଭଳି ତେଜସ୍ୱୀ, ତପଃନିଷ୍ଠ, ସଂଯମୀ ଯୁବକଙ୍କ ହୃଦୟରେ ପ୍ରଥମ ଥର ପାଇଁ ଆଲୋଡ଼ନ ସୃଷ୍ଟି ହେଲା । ପୂଜନ, ଅର୍ଚ୍ଚନ, ଧ୍ୟାନ, ଧାରଣା — ପ୍ରତ୍ୟେକ ମୁହୂର୍ତ୍ତରେ ରୁରୁଙ୍କର ଅନ୍ତର ଭିତରୁ ଏକ ଅଭିନବ ମନ୍ତ୍ର ଅହରହ ଉଚ୍ଚାରିତ ହେଲା — ପ୍ରମଦ୍ବରା ! ପ୍ରମଦ୍ବରା !

ପ୍ରଥା ଅନୁଯାୟୀ ରୁରୁଙ୍କ ପିତା ପ୍ରମତି ପ୍ରମଦ୍ବରାଙ୍କୁ ବଧୂ ଭାବରେ ସ୍ୱାଗତ କରିବା ପାଇଁ ଋଷି ସ୍ଥୂଳକେଶଙ୍କ ଆଶ୍ରମରେ ପହଞ୍ଚିଲେ । ସେଦିନ ସନ୍ଧ୍ୟା ଆକାଶରେ ପାଟଳ ମେଘର ପତଳା ଆସ୍ତରଣ । ଆଶ୍ରମର ମୃଗ ଶାବକଙ୍କୁ ପ୍ରମଦ୍ବରା ତୃଣାଙ୍କୁର ଖୁଆଉଥିଲେ । ପକ୍ୱ କେଶ ବିଶିଷ୍ଟ ମୁନି ସ୍ଥୂଳକେଶଙ୍କର ଉଦାସ ଦୃଷ୍ଟି ଦିଗନ୍ତରେ ହଜି ଯାଇଥିଲା । ଏହି ସମୟରେ ପ୍ରମତି ତାଙ୍କ ଆଶ୍ରମରେ ପଦାର୍ପଣ କଲେ । ଉପଯୁକ୍ତ ସତ୍କାର ପରେ ଆଗମନର ଉଦ୍ଦେଶ୍ୟ ସମ୍ପର୍କରେ ଜଣାଇ ରୁରୁଙ୍କର ବଂଶ ପରିଚୟ ସ୍ଥୂଳକେଶ ମୁନିଙ୍କୁ ତଥା ପରୋକ୍ଷରେ ବରାରୋହା ପ୍ରମଦ୍ବରାଙ୍କୁ ଜଣାଇଲେ । ଭୃଗୁ ପତ୍ନୀ ପୁଲୋମା ଅନ୍ତଃସତ୍ତ୍ୱା ଥିବା ସମୟରେ ଅନାର୍ଯ୍ୟ ପୁଲୋମା ଭୃଗୁ ପତ୍ନୀଙ୍କ ରୂପ ଲାବଣ୍ୟରେ ମୁଗ୍ଧ ହୋଇ ଭୃଗୁ ମୁନିଙ୍କ ଆଶ୍ରମ ରକ୍ଷକ ଅଗ୍ନି ଦେବଙ୍କୁ ସାକ୍ଷୀ କରି ଆର୍ଯ୍ୟା ପୁଲୋମାଙ୍କୁ ବଳାତ୍କାରରେ ହରଣ କରି ନେବାକୁ ଚାହିଁଲେ । ସତ୍ତ୍ୱା ପୁଲୋମାଙ୍କ ଗର୍ଭରୁ ଭୟରେ ପୁତ୍ରଚ୍ୟୁତ ହୋଇ ଚ୍ୟବନ ନାମ ଧାରଣ କଲେ ଏବଂ ଭୟଭୀତା ପୁଲୋମା ଅରଣ୍ୟରେ ଆତ୍ମଗୋପନ କଲେ । ଏ ସଙ୍କଟ ମୁହୂର୍ତ୍ତରେ ପୁଲୋମାଙ୍କ ନୟନରୁ ନିର୍ଗତ ଅଶ୍ରୁରେ ବନଭୂମିର ନଦୀ ପୂର୍ଣ୍ଣଗର୍ଭା ହେଲା ଓ ପ୍ରଜାପତି ବ୍ରହ୍ମା ସେ ନଦୀର ନୂତନ ନାମକରଣ କଲେ 'ବଧୂସରା' । ସେହି ନଦୀ ତୀରରେ ସ୍ଥାପିତ ଚ୍ୟବନ ଆଶ୍ରମରେ ଚ୍ୟବନ ଓ ସୁକନ୍ୟାଙ୍କର ପୁତ୍ର ମୁଁ ପ୍ରମତି । ଅପ୍ସରା ଘୃତାଚୀ ଓ ମୋର ସଙ୍ଗମର ସନ୍ତକ ମହାମନା ରୁରୁ ଏଥର ରୁରୁଙ୍କୁ ଆପଣଙ୍କର କନ୍ୟା ସମ୍ପ୍ରଦାନରେ ଆପତ୍ତି ଅଛି କି ?

ସ୍ଥୂଳକେଶ ନିଃଶବ୍ଦରେ ହସିଲେ ଓ କହିଲେ — 'ହେ ଋଷିଶ୍ରେଷ୍ଠ ! ରୁରୁ ହିଁ ପ୍ରମଦ୍ବରାର ଯୋଗ୍ୟ ପାଣି ପ୍ରାର୍ଥୀ । କିନ୍ତୁ ପ୍ରମଦ୍ବରା ମୋ କନ୍ୟା ନୁହେଁ । ମୁଁ କେବଳ ଭାରତୀୟ ସଂସ୍କୃତିରେ ଆଶ୍ରମର ଧର୍ମ ସୁରକ୍ଷା କରି ସେହି ନିଃସହାୟ ଶିଶୁ କନ୍ୟାଟିକୁ ପାଳନ କରିଛି । ପ୍ରକୃତରେ ସେ କିନ୍ତୁ ବିଶ୍ୱାବସୁ ଗନ୍ଧର୍ବ ଓ ଅପ୍ସରା ମେନକାଙ୍କ ପରିତ୍ୟକ୍ତା କନ୍ୟା । ମେନକା ବାରସାର ପ୍ରଣୟିନୀ ହୁଅନ୍ତି, ପରିଣୀତା ହୁଅନ୍ତି, କିନ୍ତୁ ଜନନୀ ହେବାରେ ତାଙ୍କର କୁଣ୍ଠା କାହିଁକି ତା' ଆଜି ବି ରହସ୍ୟାଚ୍ଛନ୍ନ । କୌଣସି ଶିଶୁର ଲାଳନ ପାଳନର ଦୁର୍ଲଭ୍ୟ ସୌଭାଗ୍ୟ ସେ ଅର୍ଜନ କରିବାକୁ ଚାହାନ୍ତି ନାହିଁ । ମେନକାଙ୍କର ସେହି ଉପେକ୍ଷିତା କନ୍ୟା ମୋର ଯତ୍ନଲାଳିତା 'ପ୍ରମଦ୍ବରା' ।

ଫାଲ୍ଗୁନ ଶୁକ୍ଳ ଦଶମୀ ତିଥି ବିବାହ ପାଇଁ ଧାର୍ଯ୍ୟ ହେଲା । ଋଷି କୁମାର ଋଷି କୁମାରୀଙ୍କ ପରିଣୟ — ଫୁଲ ଓ ଫଳର ବିନିମୟରେ ପ୍ରକୃତିର ଅଗଣାରେ ସେ ଶୁଭ ବିବାହ ଅନୁଷ୍ଠିତ ହୁଏ । ରୁଦ୍ରାକ୍ଷ ଶୋଭିତ ରୁରୁ ବର ବେଶରେ ଯେଉଁଭଳି ଅନୁପମ ଦିଶୁଥିଲେ, ପୁଷ୍ପ ମଣ୍ଡିତା ପ୍ରମଦ୍ବରା ମଧ୍ୟ ସେହିଭଳି ଅତୁଳନୀୟ ଦିଶୁଥିଲେ ।

ହୁଏତ ଅଦୃଷ୍ଟର ଇଙ୍ଗିତ ଭିନ୍ନ ଥିଲା । ବିବାହର ଅବ୍ୟବହିତ ପୂର୍ବରୁ ସର୍ପ ଦଂଶନରେ ପ୍ରମଦ୍ବରାଙ୍କର ମୃତ୍ୟୁ ହେଲା । ବିବାହ ବେଦୀ ନିକଟରେ ପହଞ୍ଚି ରୁରୁ ଦେଖିଲେ ହୋମାଗ୍ନି ସେହିଭଳି ପ୍ରଜ୍ଜ୍ୱଳିତ ହେଉଛି; କିନ୍ତୁ ପ୍ରମଦ୍ବରାଙ୍କ ଜୀବନ ପ୍ରଦୀପ ନିର୍ବାପିତ । ରଜନୀଗନ୍ଧା ସ୍ତବକ ସଦୃଶ ତାଙ୍କର ଗୌରକାନ୍ତି ବିଷ ଜର୍ଜର, ବିବର୍ଣ୍ଣ, ମୁଦ୍ରିତ ନୟନରେ ପ୍ରିୟ ମିଳନାକାଙ୍କ୍ଷାର ଅନ୍ତହୀନ ପ୍ରତୀକ୍ଷା ।

ରୁରୁ ଉଚ୍ଚ ସ୍ୱରରେ ରୋଦନ କରିବାକୁ ଲାଗିଲେ । ଉପସ୍ଥିତ ସମସ୍ତ ଋଷିଗଣଙ୍କର ପ୍ରବୋଧନା, ସାନ୍ତ୍ୱନା ବ୍ୟର୍ଥ ହେଲା । ପ୍ରତ୍ୟେକ ପ୍ରାଣୀ ଜନ୍ମ–ମୃତ୍ୟୁ ଚକ୍ରର ଅଧୀନ – ଏ କଥା ରୁରୁଙ୍କର ପ୍ରଣୟୀ ଚିତ୍ତ ବିଶ୍ୱାସ କରୁନଥିଲା ହୁଏତ ସେହି ମୁହୂର୍ତ୍ତରେ । ଶେଷକୁ ଅକସ୍ମାତ ସେ ଆଶ୍ରମରେ ଜଣେ ଦେବଦୂତ ଆବିର୍ଭୂତ ହୋଇ ରୁରୁଙ୍କୁ ତାଙ୍କ ଆୟୁର ଅର୍ଦ୍ଧେକ ପ୍ରମଦ୍‌ବରାଙ୍କ ଉଦ୍ଦେଶ୍ୟରେ ଦାନ କରିବାକୁ ପରାମର୍ଶ ଦେଲେ । ଏହା ଥିଲା ପ୍ରମଦ୍‌ବରାଙ୍କ ପ୍ରତି ରୁରୁଙ୍କ ପ୍ରେମାକର୍ଷଣର ଚରମ ପରୀକ୍ଷା । ମହାମତି ରୁରୁ ଅକୁଣ୍ଠିତ ଭାବେ ଏହା ପାଳନ କରିଥିଲେ ଓ ନିଜର ପ୍ରିୟତମାଙ୍କୁ ଜୀବନ୍ୟାସ ଦେବା ଅବସରରେ ସଂକଳ୍ପବଦ୍ଧ ହୋଇଥିଲେ ସର୍ପ ବଂଶ ବିନାଶ କରିବା ପାଇଁ ।

ଅନେକ ସର୍ପଙ୍କୁ ବିନାଶ କଲେ ବ୍ରାହ୍ମଣ ରୁରୁ । ଶେଷରେ ଦିନେ ସମିଧ ସଂଗ୍ରହ କରୁଥିବା ସମୟରେ ପଥ ପ୍ରାନ୍ତରେ ଶୋଇ ରହିଥିବା ଏକ ଡୁଣ୍ଡୁଭ (ଧୋଡ଼ସାପ)କୁ ଦେଖି ରୁରୁ ବଂଶ ଦଣ୍ଡରେ ତାକୁ ପ୍ରହାର କରିବାକୁ ଯିବା ସମୟରେ ସେ ମୃତ୍ୟୁ ଭୟଭୀତ ଡୁଣ୍ଡୁଭ ମହାଜ୍ଞାନୀ ସଦୃଶ କହିଲା – 'ହେ ମହାମନା ପ୍ରମତି ତନୟ ! ବ୍ରାହ୍ମଣ ହିଁ ସକଳ ପ୍ରାଣୀଙ୍କୁ ଅଭୟ ପ୍ରଦାନ କରିଥାଏ । ଅହିଂସା, ସତ୍ୟ, କ୍ଷମା ଓ ବେଦାଭ୍ୟାସ ବ୍ରାହ୍ମଣର ଧର୍ମ । ଦଣ୍ଡ ଧାରଣ, ଉଗ୍ରତା, ପ୍ରଜା ପାଳନ କ୍ଷତ୍ରିୟର ଧର୍ମ । ମୁଁ ଆପଣଙ୍କର କି କ୍ଷତି କରିଛି ? ଆପଣଙ୍କ ପ୍ରାଣସମା ପତ୍ନୀଙ୍କୁ ସର୍ପ ଦଂଶନ କରିଥିଲା ବୋଲି ଆପଣ ସର୍ପକୁଳ ସଂହାର କରିବାକୁ କୃତ ନିଶ୍ଚିତ । କିନ୍ତୁ ଯେଉଁ ଭୁଜଙ୍ଗ ଦଂଶନ କରନ୍ତି ସେମାନେ ଭିନ୍ନ ଜାତି । ମୋର ଆକୃତିରେ ସାଦୃଶ୍ୟ ଥାଇପାରେ, ମାତ୍ର କର୍ମ ବା ଆଚରଣରେ ନୁହେଁ, ବରଂ ମୁଁ ବୀର୍ଯ୍ୟହୀନ, ବିଷହୀନ ଭୁଜଙ୍ଗ ।' ଡୁଣ୍ଡୁଭଠାରୁ ଏ ସମସ୍ତ ଶୁଣି ରୁରୁ ଦଣ୍ଡ ପରିହାର କରି ପ୍ରଶ୍ନ କଲେ – 'ଆପଣଙ୍କ ପରିଚୟ ?' ଡୁଣ୍ଡୁଭ କହିଲେ – 'ମୁଁ ଅଭିଶପ୍ତ ସହସ୍ରପାତ ମୁନି । ପୂର୍ବେ ଆଦ୍ୟ କୈଶୋରରେ ତପଃନିରତ ମୋର ବନ୍ଧୁ ଖଗମଙ୍କୁ ତୃଣ ନିର୍ମିତ ସର୍ପ ଦ୍ୱାରା ଭୟଭୀତ କରାଇଥିଲି ବୋଲି ତାଙ୍କ ଦ୍ୱାରା ଅଭିଶପ୍ତ ହୋଇ ଏହି ବିଡ଼ମ୍ବନାପ୍ରାପ୍ତ ହୋଇ ବିଷହୀନ, ବୀର୍ଯ୍ୟହୀନ ଭୁଜଙ୍ଗତ୍ୱ ବରଣକରି ନେଇଛି । ଆଜି ମୋର ଶାପ ମୁକ୍ତିର ମୁହୂର୍ତ୍ତ ଉପସ୍ଥିତ । ଖଗମ କହିଥିଲେ ପ୍ରମତି ତନୟ, ପ୍ରଣୟୀ ଶ୍ରେଷ୍ଠ ରୁରୁଙ୍କ ଦର୍ଶନରେ ହିଁ ମୋର ମୁକ୍ତି ।'

ସହସ୍ରପାତ୍ ଋଷି ଅନ୍ତର୍ହିତ ହୋଇଗଲେ । ମହାତ୍ମା ରୁରୁ ମହଦ୍‌ବନର ସେହି ରହସ୍ୟାଚ୍ଛନ୍ନ ଅରଣ୍ୟ ପଥରେ ଠିଆ ହୋଇ ନିଜର ସମସ୍ତ ସଂକଳ୍ପ ବିସ୍ମୃତ ହୋଇ କ୍ଷମାର ନୂତନ ମନ୍ତ୍ରରେ ପ୍ରାଣକୁ ଅଭିମନ୍ତ୍ରିତ କରୁଥିଲେ ।

(ବ୍ୟାସକୃତ ମହାଭାରତ ଅବଲମ୍ବନରେ)

ମାର୍ଫତ୍ : ଡକ୍ଟର କୃଷ୍ଣଚନ୍ଦ୍ର ମିଶ୍ର,
ଅବସରପ୍ରାପ୍ତ ଅଧ୍ୟାପକ,
ସିଦ୍ଧ ମହାବୀର ମନ୍ଦିର ସମ୍ମୁଖ,
ପୁରୀ–୨ ।



ମହତାବ ଜୟନ୍ତୀ ଉପଲକ୍ଷେ ସୂଚନା ଭବନଠାରେ ଆୟୋଜିତ ଏକ ସଭାରେ ବିଧାନ ସଭା ବାଚସ୍ପତି, ଶ୍ରୀ ଯୁଧିଷ୍ଠିର ଦାସ କୃତି ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ କରୁଛନ୍ତି । ଶିକ୍ଷା ମନ୍ତ୍ରୀ, ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ମଞ୍ଚାସୀନ ଅଛନ୍ତି (୨୧/୧୧) ।

# ପାଠକଙ୍କ କଲମରୁ

**ଶ୍ରୀ ଦେବେନ୍ଦ୍ର କୁମାର ନାୟକ, ଗ୍ରାମ : ବିରଜାପୁର, ପୋଷ୍ଟ : ରାମବାଗ, ଥାନା : ଯାଜପୁର (କଟକ) ।**

*ଉତ୍କଳ ପ୍ରସଙ୍ଗର ପ୍ରତ୍ୟେକ ସଂଖ୍ୟାରେ ଆମ ଓଡ଼ିଶାର ଗୋଟିଏ ଗୋଟିଏ ପର୍ଯ୍ୟଟନ ସ୍ଥାନର ଚିତ୍ର ତଥା ଦର୍ଶନୀୟ ଭୌଗଳିକ ଓ ଐତିହାସିକ ତଥ୍ୟ ବର୍ଣ୍ଣନା ପ୍ରକାଶ କରାଗଲେ ଭଲ ହୁଅନ୍ତା ।

**ମତାମତ ପାଇଁ ଧନ୍ୟବାଦ । ଆଗାମୀ ସଂଖ୍ୟାଠାରୁ ଏହା କାର୍ଯ୍ୟକାରୀ ହୋଇବ । ଅତଏବ୍ ବିଭିନ୍ନ ପର୍ଯ୍ୟଟନ ସ୍ଥାନ ସମ୍ପର୍କରେ ବିଭିନ୍ନ ସ୍ଥାନରୁ ଲେଖା ଆସିବା ଆବଶ୍ୟକ ।

**ଶ୍ରୀ ଭୀମସେନ ସେନାପତି, ଫୁଲବାଣୀ ।**

*ପାଠକମାନଙ୍କ ମତାମତ ଜାଣିବା ପାଇଁ ଯେଉଁ କୁପନ ବ୍ୟବସ୍ଥା କରିଛନ୍ତି, ତାହା ପ୍ରଶଂସନୀୟ ପଦକ୍ଷେପ । ଗ୍ରହଣୀୟ ମତାମତକୁ କାର୍ଯ୍ୟକାରୀ କରିବେ ତ ?

**ଗ୍ରହଣଯୋଗ୍ୟ ପ୍ରସ୍ତାବ ହୋଇଥିଲେ କାର୍ଯ୍ୟକାରୀ କରିବାକୁ ପଦକ୍ଷେପ ନିଶ୍ଚିତ ଭାବେ ନିଆଯିବ ।

**ଶ୍ରୀ ବିଦ୍ୟାଧର ବାବୁ, ଭବାନୀପାଟନା, କଳାହାଣ୍ଡି ।**

*ଓଡ଼ିଶାର ସବୁ ଅଞ୍ଚଳର ଲେଖକମାନଙ୍କୁ ଉତ୍କଳ ପ୍ରସଙ୍ଗରେ ସୁବିଧା ସୁଯୋଗ ଦିଆଯିବା ଉଚିତ । ଏ ଦିଗରେ ଦୃଷ୍ଟି ଦେବେ କି ?

**ଏ ଦିଗରେ ନିଶ୍ଚିତ ଭାବେ ଦୃଷ୍ଟି ଦିଆଯାଉଛି । ଓଡ଼ିଶାର ତେର ଗୋଟି ଜିଲ୍ଲା ମଧ୍ୟରୁ ଏହି ସଂଖ୍ୟାରେ ନଅଗୋଟି ଜିଲ୍ଲାର ଲେଖକମାନଙ୍କୁ ସୁଯୋଗ ଦିଆଯାଇଛି ।

## ବିଶେଷ ସୂଚନା

ଉତ୍କଳ ପ୍ରସଙ୍ଗର ପାଠକ ପାଠିକାମାନଙ୍କୁ ସେମାନଙ୍କ ସୁଚିନ୍ତିତ ମତାମତ ଉପସ୍ଥାପନ କରିବା ସୁଯୋଗ ଦେବା ନିମନ୍ତେ ପାଠକଙ୍କ କଲମରୁ ବିଭାଗ ସୃଷ୍ଟି କରାଯାଉଛି ।

ଆଗ୍ରହୀ ପାଠକ ପାଠିକାମାନେ ନିମ୍ନରେ ଦିଆଯାଉଥିବା କୁପନ ବ୍ୟବହାର କରି ସେମାନଙ୍କ ପ୍ରଶ୍ନ ବା ମତାମତ ପଠାଇବାକୁ ଅନୁରୋଧ ।

ସତୀଶ ପାଢୀ
ମୁଖ୍ୟ ସମ୍ପାଦକ

ପ୍ରଶ୍ନ ଉତ୍ତର ପାଇଁ କୁପନ

--- CUT HERE ---

ନାମ ..............
ଗ୍ରାମ ..............
ପୋଷ୍ଟ ..............
ଜିଲ୍ଲା ..............

କେବଳ ୩୧/୧ /୧୯୯୨ ପୂର୍ବରୁ ବ୍ୟବହାର ପାଇଁ

ମତାମତ ବା ପ୍ରଶ୍ନ

..............................................

ସ୍ୱାକ୍ଷର

OGP—MP—PTS (I&PR) 35—6,000—27-12-1991



[illegible] ନଗରଠାରେ ଆୟୋଜିତ ରାଜ୍ୟସ୍ତରୀୟ ଚଳଚ୍ଚିତ୍ର ପୁରସ୍କାର ଉତ୍ସବରେ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକ [illegible] ମିଶ୍ରଙ୍କୁ "ଜୟଦେବ" ପୁରସ୍କାର ପ୍ରଦାନ କରୁଛନ୍ତି । ମନ୍ତ୍ରୀ, ଶ୍ରୀଶରତ କୁମାର କର ଉପସ୍ଥିତ ଅଛନ୍ତି ।



ଭୁବନେଶ୍ୱରଠାରେ "ନୌ-ଦିବସ" ଉପଲକ୍ଷେ ମୁଖ୍ୟମନ୍ତ୍ରୀ, ଶ୍ରୀ ବିଜୁ ପଟ୍ଟନାୟକ ଏକ ସାଇକେଲ ଯାତ୍ରାର ଶୁଭ ଉଦ୍‌ଘାଟନ କରୁଛନ୍ତି ।

Vol. XLVIII No. 5 Utkal Prasanga Regd No O-05/91

Licence No. C.R.N.P. 5—Licensed to Post without Pre-Payment



ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଭାରତ ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶା ଦିବସ ଉଦ୍‌ଘାଟନ କରୁଛନ୍ତି (୧୭/୧୧)।



ଗଞ୍ଜାମ, କୋରାପୁଟ ଓ ଫୁଲବାଣୀ ଭଳି ଅନଗ୍ରସର ଜିଲ୍ଲାରେ ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନ ସମ୍ପର୍କରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଜର୍ମାନୀ ପ୍ରତିନିଧି ଦଳଙ୍କ ସହ ଆଲୋଚନାରତ (୨୯/୧୧)।